ଏଥିରେ ପଢ଼ିବାକୁ ପାଇବେ –





# ବୈଜ୍ଞାନିକ ଯାଦୁକର


ଲେଖକ :

**ପ୍ରେମାନନ୍ଦ ପଟ୍ଟନାୟକ,** ବି. ଏସ୍‌ସି., ବି. ଏଡ୍.



ପ୍ରକାଶକ :

**ମଞ୍ଜୁଶ୍ରୀ ପ୍ରକାଶନ**

ଅଶୋକ ନଗର, ବ୍ରହ୍ମପୁର-୪

ମୁଦ୍ରଣ : **ସନ୍ତୋଷ ପ୍ରିଣ୍ଟର୍ସ,** ବ୍ରହ୍ମପୁର-୯

ପ୍ରକାଶ କାଳ : ଗୀତା ଜୟନ୍ତୀ, ୧୯୯୦

ମୂଲ୍ୟ : **ଛଅ ଟଙ୍କା ପଚାଶ ପଇସା**



# ବୈଜ୍ଞାନିକ ଯାଦୁକର

[ ଏଡିସନ୍ ]

ମିଲାନ୍ ସହର । ଭାରି ଭିଡ଼ । ଘର ଟିକସ ଦେବାପାଇଁ ଲୋକେ ଧାଡ଼ିବାନ୍ଧି ଠିଆ ହୋଇଥାନ୍ତି । ଟିକସ ସଂଗ୍ରାହକ ନାଁ ପଚାରି ଜଣ ଜଣକର ଟିକସ ନେଉଥାନ୍ତି । ଶେଷରେ ଜଣେ ଲୋକର ପାଳି ଆସିଲା । ସଂଗ୍ରାହକ ପଚାରିଲେ— ଆପଣଙ୍କ ନାଁ କଣ ?

ଅନ୍ୟମନସ୍କ ହୋଇ ସେ ଉତ୍ତର ଦେଲେ--ଆଜ୍ଞା, ମୋ' ନାଁ ମନେ ନାହିଁ । ସଂଗ୍ରାହକ ଟିକେ ବିରକ୍ତ ହୋଇ କହିଲେ - କି ଅଜବ ଲୋକଟା ମ ! ନିଜ ନାଁଟା ବି ଭୁଲିଯାଇଛ ?

ଏହା ଶୁଣି ସେଠାରେ ଜମା ହୋଇଥିବା ଲୋକେ ତୋ···ତୋ·· ହୋଇ ହସିଲେ । ଏଣେ ନିଜ ନାଁ କହି ନପାରିବା ଲୋକଟି ବେଶ୍ ସାଦାସିଧା । ମୁହଁରୁ ଜଣା ପଡୁଥିଲା, ସେ ଜଣେ ଆଡ଼ପାଗଳ । ସେ କେବଳ ଚୁପ୍‌ଚାପ୍ ଠିଆ ହୋଇ ସବୁ ଲକ୍ଷ୍ୟ କରୁଥାନ୍ତି । ହଠାତ୍ ପଛ ଭିଡ଼ ଠେଲି ଜଣେ ବଡ଼ ପାଟିରେ କହିଲା—ଆଜ୍ଞା, ମୁଁ ତାଙ୍କୁ ଜାଣେ । ସେ

ହେଉଛନ୍ତି ଟମାସ୍ ଆଲ୍‌ଭା ଏଡ଼ିସନ୍ । ଜଣେ ବିଖ୍ୟାତ ବୈଜ୍ଞାନିକ ।

ଆଉପାଗଲ ଜଣକ କହିଲେ—ହଁ, ହଁ, ମୁଁ ଭୁଲି ଯାଇଥିଲି । ମୋ' ନା ସେଇଆ । ଏମିତିକା କଥା ଶୁଣି ସମସ୍ତେ ଅବାକ୍ ହୋଇଗଲେ । ସବୁ ଲୋକ ଧାଡ଼ି ବାନ୍ଧି ଘେରିଗଲେ ତାଙ୍କୁ । ଏ ବୈଜ୍ଞାନିକଙ୍କୁ ଦେଖିବାକୁ ଲୋକଙ୍କର ବହୁ ଦିନର ଆଗ୍ରହ ଥିଲା । ଏବେ ସୁଯୋଗ ମିଳିଛି । ହାତଛଡା କରୁଛି କିଏ ? ଲୋକମାନେ ହାତ ହଲାଇ ସମ୍ବର୍ଦ୍ଧନା ଜଣାଉଛନ୍ତି ଏଡ଼ିସନ୍‌ଙ୍କୁ । ତାଙ୍କର ସରଳ ଓ ନିରାଡମ୍ବର ଚେହେରା ଦେଖି ଆଶ୍ଚର୍ଯ୍ୟ ହୋଇ ଯାଉଛନ୍ତି କେତେକ ଲୋକ ।

ଜଣେ ତାଙ୍କୁ ପଚାରିଲେ—ଆପଣ କ'ଣ ଯାଦୁକର ?

ଏଡ଼ିସନ୍ କହିଲେ—ଯାଦୁକର ଯାଦୁବିଦ୍ୟା ଦେଖାଇ ଦେଖଣାହାରୀଙ୍କୁ ବୋକା ବନାଇ ଦିଅନ୍ତି । ସେ ସବୁ ଅବାସ୍ତବ ଓ କ୍ଷଣସ୍ଥାୟୀ । ତାହା କେବଳ ହାତସଫେଇ କାମ । କିନ୍ତୁ ବୈଜ୍ଞାନିକମାନେ ସେଇଆ ନୁହନ୍ତି । ସେମାନେ ବାସ୍ତବ ଜିନିଷ ଉଦ୍ଭାବନ ବା ଆବିଷ୍କାର କରନ୍ତି । ଏହା ଲୋକମାନଙ୍କ ସେବାରେ ଲାଗେ ।

ପ୍ରଶ୍ନ କର୍ତ୍ତା—ଆଜ୍ଞା, ବିଜ୍ଞାନ କହିଲେ ଆପଣ କ'ଣ ବୁଝନ୍ତି ?

ଏଡ଼ିସନ୍—ସତ୍ୟ ହିଁ ବିଜ୍ଞାନ । ଆଉ ବିଜ୍ଞାନ ହିଁ ସତ୍ୟ । ସତ୍ୟର ଅନୁସନ୍ଧାନ ପାଇଁ ବୈଜ୍ଞାନିକମାନେ ସବୁବେଳେ

ଚିନ୍ତାଶୀଳ । ଆମେ ଯାହା ସବୁ ଦେଖୁଛନ୍ତି, ସେଗୁଡ଼ିକର ସୃଷ୍ଟି କିପରି, ତାହା କେଉଁ ଉପାଦାନରେ ଗଢ଼ା ଓ କେଉଁ ଉଦ୍ଦେଶ୍ୟରେ ସୃଷ୍ଟି, ସେ ବିଷୟରେ ସେମାନେ ଅନୁସନ୍ଧାନ କରନ୍ତି । ଏଥିପାଇଁ ସେମାନେ ବେଳେ ବେଳେ ନିଜକୁ ବି ଭୁଲିଯାଆନ୍ତି । ସେଥିପାଇଁ ମୁଁ ଜଣେ ।

ପ୍ରଶ୍ନ କର୍ତ୍ତା—ତେବେ ଆପଣ ବୈଜ୍ଞାନିକ ହେବା ପାଇଁ ପିଲାଦିନେ କଣ ଚିନ୍ତା କରୁଥିଲେ ?

ଏଡ଼ିସନ୍—ଏଇ କଥା ତ ! ମୁଁ ପିଲାବେଳେ ଭାରି ଦୁଷ୍ଟ ଥିଲି । ଯାହା ନୂଆ ଚିଜ ଦେଖେ, ତାହା କିପରି, କାହିଁକି ଓ କଣ ଜାଣିବା ପାଇଁ ଇଚ୍ଛା କରୁଥିଲି । ଦିନକର ଘଟଣା କହୁଛି । ମୋ ମାଆ ଘରେ କୁକୁଡ଼ା ପୋଷିଥାଆନ୍ତି । ମୁଁ ଖେଳୁ ଖେଳୁ କୁକୁଡ଼ାମାନଙ୍କ ପାଖରେ ପହଞ୍ଚିଗଲି । ମତେ ଦେଖି ସବୁ କୁକୁଡ଼ା ଖର୍ଡି ଉଡ଼ା ଦେଇ ଚାଲିଗଲେ । ହେଲେ ଗୋଟିଏ କୁକୁଡ଼ା ଯିମିତ ସିମିତ ବସି ରହିଲା । ମତେ ବଡ଼ କୌତୁକିଆ ଲାଗିଲା । ମୁଁ ସେ ବସିଥିବା କୁକୁଡ଼ା ପାଖକୁ ଯାଇ ତାକୁ ଉଠାଇବାକୁ ଚେଷ୍ଟା କଲି । କିନ୍ତୁ ଫଳ ହେଲା ଓଲଟା । କୁକୁଡ଼ା ଉଡ଼ି ନଯାଇ ମତେ ଖୁମ୍ପି ଦେଲା ।

ମୁଁ ଯାଇ ମାଆଙ୍କୁ ପଚାରିଲି—ମାଆ, କୁକୁଡ଼ାଟିଏ ଗୋଟିଏ ସ୍ଥାନରେ ବସି ରହିଛି । ଜମା ଉଠୁନି । ତା' ଦେହ ଖରାପ କି କ'ଣ ! ଚାଲ, ତାକୁ ଡାକ୍ତରଖାନାକୁ ନେବା ।

ମାଆ ମୋ' କଥା ଶୁଣି ଟିକେ ହସିଦେଇ କହିଲେ—ତୁ ବୋକାଟାଏ । ମାଆ କୁକୁଡ଼ା ତା' ଅଣ୍ଡାକୁ ପେଟତଳେ ରଖି ଉଷୁମାଉଛି । ତୁ ତା' ପାଖକୁ ଗଲୁ କାହିଁକି ?

ମୁଁ ପଚାରିଲି—ହେଲେ କୁକୁଡ଼ା କାହିଁକି ଅଣ୍ଡା ଉଷୁମାଉଛି ? ସେ ଅଣ୍ଡା କଣ ଅଣ୍ଡା ହୋଇଯାଇଥିଲା ?

ମାଆ କହିଲେ—ତୁ ବୁଝିବୁନି । ଅଣ୍ଡା ଭିତରେ ତା' ଛୁଆ ଅଛି । ଉଷୁମ ପାଇଲେ କିଛି ଦିନ ପରେ ଛୁଆ ଘୁଅଁ ତା' ଭିତରୁ ବାହାରି ଆସିବ ।

ମୁଁ ପଚାରିଲି—ମାଆ, ତମେ ମତେ ମିଛ କହୁଛ । ଅଣ୍ଡା ଭିତରକୁ ତ ଛୁଆଁ ଗଳିବାକୁ ରାସ୍ତା ନାହିଁ । ହେଲେ ଛୁଆ ତା' ଭିତରକୁ ଗଲା କେମିତି ?

ମାଆ କହିଲେ—ତୁଟା ପାଗଳ । ପାଠ ପଢ଼ାରେ ମନ ଦେ । ଏ କଥା ତୁ ବଡ଼ହେଲେ ଜାଣିବୁ ।

ମୁଁ ସେଦିନ ମାଆଙ୍କ କଥା ମାନିନେଲି ସିନା ସେ ଦିନର ଘଟଣା ମୋର ମନେ ଥାଏ । ଦିନେ କୁକୁଡ଼ା ଅଣ୍ଡାଟିଏ ଆଣି ପେଟତଳେ ରଖି ଖଟତଳେ ଶୋଇ ରହିଲି । ଏମିତି ଘଣ୍ଟାଏ ପରେ ଘଣ୍ଟାଏ ବିତିଗଲା । ମତେ ନ ପାଇ ସମସ୍ତେ ଖୋଜୁଥାନ୍ତି । ଏହା ଜାଣି ବି ମୁଁ ଚୁପ୍ ହୋଇ ଖଟତଳେ ଅଣ୍ଡା ଜାକି ରହିଥାଏ । ହଠାତ୍ ଖୋଜୁ ଖୋଜୁ ମାଆଙ୍କ ନଜର କମିତି ମୋ ଉପରେ ପଡ଼ିଗଲା । ସେ ପଚାରିଲେ—ଆରେ ଏ, କଣ କରୁଛୁ ସେଠି ?

ମୁଁ କହିଲି—ମତେ ଉଠାଅନି । ମୁଁ ପରା ଏଠି ଶୋଇ ଅଣ୍ଡା ଉଷୁମାଉଛି ।

ମୋ କଥା ଶୁଣି ମାଆ ହସି ହସି ବେଦମ୍ । ସେ କହିଲେ, ଦେଖିଲୁ ଅଣ୍ଡା ଉଷୁମ୍ ହୋଇଯିବଣି । ତା' ଭିତରୁ ଛୁଆ ବାହାରିଯିବଣି କି କ'ଣ ?

ମାଆଙ୍କ କଥା ମାନି ମୁଁ ଶୋଇବା ଜାଗାରୁ ଉଠି ଦେଖିଲି ବେଳକୁ ଅଣ୍ଡାଟି ଚୁରମାର ହୋଇଯାଇଛି । ପୁଣି ଅଣ୍ଡା ଭିତରୁ ଲାଲ ଓ କେଶର ବାହାରି ମୋ' ଜାମାପଟା ଅସନା ହୋଇଯାଇଛି । ମତେ ଆଶ୍ଚର୍ଯ୍ୟ ଲାଗିଲା, ଏମିତି ହେଲା କାହିଁକି ?

ମାଆ କହିଲେ—ଆରେ ଓଲୁ, ଭଗବାନ ଯାହାକୁ ଯେଉଁ କାମ ଦେଇଛନ୍ତି, ସେ ତାହା କରିବ । ଅଣ୍ଡା ଉଷୁମାଇ ଛୁଆ ବାହାର କରିବା ହେଲା କୁକୁଡ଼ାର କାମ । ଏ କାମ ତୋର ନୁହେଁ ।

ଆଉ ଦିନକର ଘଟଣା । ନିଆଁର କରାମତି ଜାଣିବା ପାଇଁ ମୁଁ ଖଣ୍ଡିଏ ଜଳନ୍ତା ମହମବତୀ ନେଇ ପଡୋଶୀ ଘର ଚାଳରେ ଲଗାଇ ଦେଲି । ଦେଖୁ ଦେଖୁ ପଡ଼ିଶା ଘର ସହିତ ଆଖପାଖ ଘରସବୁ ପୋଡ଼ି ପାଉଁଶ ହୋଇଗଲା । ଏମିତିକା ଘଟଣା ହେବ ବୋଲି ମୁଁ ଜମା ଭାବି ନଥିଲି । ମାଆଙ୍କଠୁ ଗାଳି, ମାଡ ଖାଇବା ଭୟରେ ସେଦିନ ଯାଇ ମୁଁ ଅନ୍ୟଠି ଲୁଚି ରହିଲି । ଏମିତିକା ଅଘଟଣ ଘଟାଇଥିବା ଲୋକଙ୍କୁ ସମସ୍ତେ ଖୋଜିଲେ । ଶେଷରେ ସମସ୍ତେ ଜାଣିଲେ ଯେ ଏ ନିଆଁ ଲଗା କାମଟି ମୋର । ଏଥିରେ ମାଆ ମତେ ଧମକାଇ ପଚାରିଲେ—ଟମାସ୍, ସତ କହ, ଏମିତି କାମ ତୁ କାହିଁକି କଲୁ ?

ପ୍ରକୃତରେ ତ ମୁଁ ଭୁଲ୍‌ଟିଏ କରି ବସିଛି । ତାକୁ ଲୁଚାଇବି କିମିତି ? ତେଣୁ ଭୟରେ ଥରି ଥରି ଉତ୍ତର ଦେଲି— କ୍ଷମାକର ମାଆ, ମୋର ଦୋଷ ହୋଇଛି । ନିଆଁ ଲାଗିଲେ କ'ଣ ହୁଏ, ତାହା ଜାଣିବାକୁ ମୁଁ ଏପରି କରିଥିଲି । ଆଉ ଏଭଳି ଖରାପ କାମ ମୁଁ କେବେ କରିବିନି ।

ଏମିତି ସତ୍ୟର ପରୀକ୍ଷା କରିବାକୁ ଯାଇ କେତେ ଲୋକଙ୍କଠାରୁ ଗାଳି ଶୁଣିଛି । ବେଳେ ବେଳେ ମାଡ଼ ବି ଖାଇଛି । କିନ୍ତୁ ମୋ' କାମରେ ମୁଁ ଅଟଳ ଥାଏ ।

ନିଜ ପିଲାଦିନର କେତୋଟି ଘଟଣା କହିଦେଇ ଏଡ଼ିସନ୍ ପାଖରେ ଥିବା ସବୁ ଲୋକଙ୍କୁ ଉଦ୍‌ବୋଧନ ଦେଇ କହିଲେ—ଆପଣମାନେ ସମୟ ନଷ୍ଟ କରନ୍ତୁ ନାହିଁ । ପ୍ରତ୍ୟେକ କାମ ନିଜର ମନୋବଳ ଓ ଆଗ୍ରହ ସହକାରେ କରନ୍ତୁ । ତାହାହେଲେ କୌଣସି କାମ ଅସମ୍ଭବ ହୋଇ ରହିବ ନାହିଁ । ସବୁବେଳେ କିଛି ନା କିଛି ନୂଆ ଜିନିଷ ସୃଷ୍ଟି କରିବା ପାଇଁ ମଣିଷ ଚେଷ୍ଟା କରୁଛି । ସେଥିରୁ ହିଁ ତାକୁ ମିଳେ ଆନନ୍ଦ । ଆଉ ସେହି ଆନନ୍ଦ ହିଁ ଉଦ୍‌ଭାବକର ପୁରସ୍କାର ।



[ ବିଜୁଳିବତୀ ]

ପ୍ରକୃତରେ ଏଡ଼ିସନ୍ ରେଳ-ଷ୍ଟେସନରେ ଥିଲେ ଜଣେ ଖବର କାଗଜ ବିକାଳି । କିନ୍ତୁ କିଏ ଜାଣିଥିଲା, ଖବରକାଗଜ ବିକୁଥିବା ଲୋକ ଦିନେ ପୃଥିବୀ ବିଖ୍ୟାତ ବୈଜ୍ଞାନିକ ହେବେ ବୋଲି ? ଜୀବନରେ ସେ କେତେ ଦୁଃଖ, କଷ୍ଟ, ନିର୍ଯ୍ୟାତନା,

ନିନ୍ଦା ଓ ଅପମାନ ପାଇଥିଲେ ବି ସେ ସବୁକୁ ଫୁଲମାଳପରି ବରଣ କରିଥିଲେ ।




[ ଟେଲିଗ୍ରାଫ ]




[ ଟେଲିଗ୍ରାଫ ]

ଏଡ଼ିସନ୍ ପ୍ରତି ଦଶ ଦିନରେ ଗୋଟିଏ ଗୋଟିଏ ନୂଆ ଜିନିଷ ଉଦ୍ଭାବନ କରିପାରୁଥିଲେ । ସେଥିପାଇଁ ତାଙ୍କୁ ଲୋକେ

'ବୈଜ୍ଞାନିକ ଯାଦୁକର ବା 'ମିଲ୍‌ନର ଯାଦୁକର' ବୋଲି କହୁଥିଲେ । ବିଜୁଳିବତୀ, ଫୋନୋଗ୍ରାଫ୍, ଟେଲିଗ୍ରାଫ୍ ଆଦି ତାଙ୍କର ଉଦ୍ଭାବନ । ଏଥିରେ ମାନବ ଜାତିର କେତେ କଲ୍ୟାଣ ହେଉଛି ତାହା ଆମେ ସମସ୍ତେ ଜାଣୁଛେ ।



[ ଫୋନୋଗ୍ରାଫ୍ ]

୧୮୮୪ ମସିହାରେ ଏଡ଼ିସନ୍ ମିଲାନ୍ ସହରରେ ଜନ୍ମ ହୋଇ ୧୯୩୧ ମସିହାରେ ମୃତ୍ୟୁବରଣ କରିଥିଲେ । ହେଲେ ଯେତେଦିନ ଯାଏଁ ବିଜୁଳିବତୀ ଜଳୁଥିବ, ସେତେଦିନ ଯାଏଁ କିଏ ଆମେ ତାଙ୍କୁ ଭୁଲି ପାରିବା ! ଏମିତିକା ବୈଜ୍ଞାନିକଙ୍କୁ ଆମେ ଯାଦୁକର ବୋଲି କହିବାନି ତ, ଆଉ କାହାକୁ କହିବା ?

— ୫⁂୫ —

# ଏ ମନ ଭାବୁଥାଇ ଯାହା



[ ଫାରଡେ ]

ରୁନା ଠିଆ ହୋଇଛି ଦାଣ୍ଡ ବାରଣ୍ଡାରେ । ଆଗରେ ଦେଖୁଛି କେତେ ଗାଡ଼ି, ସ୍କୁଟର, ବସ୍ ଯିବା ଆସିବା କରୁଛନ୍ତି । ଯିଏ ଯା କାମରେ ବ୍ୟସ୍ତ । କିନ୍ତୁ ତା' ମନଟା ଖାଲି ଉବୁରୁ ଟୁବୁରୁ ହେଉଛି । ସେ ଅପେକ୍ଷା କରିଛି ତାର ଡ଼ାଡ଼ିଙ୍କୁ । ତା' ଡ଼ାଡ଼ି ଜଣେ ବିଜ୍ଞାନ ପ୍ରଫେସର । ଡ଼ାଡ଼ିଙ୍କର ଫେରିବା ସମୟ ଯେତିକି ଡେରି ହେଉଥାଏ, ରୁନାର ମନ ସେତିକି ଅଥୟ ହୋଇ ଉଠୁଥାଏ । କାରଣ ସେ ଆଜି ତା' ଡାଡ଼ିଙ୍କୁ ଗୋଟିଏ ପ୍ରଶ୍ନ ପଚାରିବ ।

ଦେଖୁ ଦେଖୁ ଡ଼ାଡ଼ି ଆସି ପହଞ୍ଚିଗଲେ ଘର ସାମନାରେ । ରୁନା ଖାଲି ମାଛରଙ୍କୁଣା ବରାଡ଼ି ପରି ତରବର ହେଉଥାଏ । ରୁନାର ମନ ଚଞ୍ଚଳ ଦେଖି ଡାଡ଼ି ପଚାରିଲେ—କିରେ ରୁନା, ତୋର ଆଜି କ'ଣ ହୋଇଛି ? ଏମିତି କାହିଁକି ଚଞ୍ଚଳିଆ ଜଣାପଡୁଛୁ ଆଜି !

ରୁନା କହିଲା—ଡାକ୍ତର, ମୁଁ ଆଜ ତମକୁ ଗୋଟିଏ ପ୍ରଶ୍ନ ପଚାରିବ । ତା' ଉତ୍ତର ମତେ କହିଦେବ ।

ଡାକ୍ତର କହିଲେ—ହଉ ହେଲା, ମୁଁ ଟିକେ ଆଗେ ଆରାମରେ ବସେ । ତେଣେ କ୍ଲାସ୍‌ରୁ ବିରକ୍ତ ହୋଇ ଫେରିଛି । ଲୁଗା ବଦଳାଇ ଚାହା କପେ ଖାଇଲା ପରେ ତୋ'ର ପ୍ରଶ୍ନ କଥା ବୁଝିବା ।

ଏହା କହି ଡାକ୍ତର ଘର ଭିତରକୁ ଯାଇ ସଫାସୁତୁରା ହୋଇଗଲେ । ରୁନା ଚାହା କପେ ଡାକ୍ତରଙ୍କୁ ଦେଇଦେଲା । ଏଥର ଡାକ୍ତର କହିଲେ—ଟିକେ ଫେନ୍‌ର ସୁଇଚ୍‌ଟା ଟିପିଦେଲୁ ।



[ ପଙ୍ଖା ]

ରୁନା ଏହି କଥାକୁ ହିଁ ଚାହିଁ ବସିଥିଲା । ସେ ଫେନ୍‌କୁ ଲଗାଇଦେଇ କହିଲା—ଡାକ୍ତର, ଏ ଫେନ୍‌ର ସୁଇଚ ଟିପିଲେ ଏହା ବୁଲୁଚ କିମିତ ?

ଡାକ୍ତର କହିଲେ—ଏଇ କଥା ତ ! ଏସବୁ ବିଜ୍ଞାନର କାରସାଦି । ବିଜୁଳିଶକ୍ତି ଦ୍ୱାରା ଫେନ୍ ଘୂରୁଛି । ଫେନ୍ ଭିତରେ ଯେଉଁ ତାର କୁଣ୍ଡଳୀ ଅଛି, ସେଥିରୁ ବିଦ୍ୟୁତ୍‌ଶକ୍ତି

ବାହାର ଚେପନକୁ ଦୂରଉଛି । କିନ୍ତୁ ତୁ ଜାଣିନୁନା, ଏ ବିଜୁଳି-ଶକ୍ତିକୁ କେଉଁ ବୈଜ୍ଞାନିକ ଆବିଷ୍କାର କରିଥିଲେ ? ଆଉ ତାଙ୍କ ଜୀବନୀ କେମିତିକା ?

ରୁନା କହିଲା—ଡ଼ାଡ଼ି, ସେ କଥା ପଚାରିବ ବୋଲି ମୁଁ ଆଜି ତୁମକୁ ଦାଣ୍ଡରେ ଏ ଯାଏଁ ଅପେକ୍ଷା କରିଥିଲି ।

ଡାଡ଼ି କହିଲେ—ହଉ ଶୁଣେ । ଏ ବିଜୁଳିଶକ୍ତିର ଜନକ ହେଉଛନ୍ତି ମାଇକେଲ୍ ଫାରାଡେ । ତାଙ୍କ ଜୀବନ କାହାଣୀ ଶୁଣିଲେ ଆମକୁ କାନ୍ଦ ମାଡ଼ିବ । ଏତେ ବଡ଼ ବୈଜ୍ଞାନିକ ଫାରାଡେ ହେଉଛନ୍ତି ଜଣେ ଗରିବ କମାରଙ୍କ ପୁଅ । ପିଲାବେଳୁ ସେ ଖେନା । ପଇସା ଅଭାବରୁ ସେ ସ୍କୁଲ୍ ବା କଲେଜରେ ପାଠ ପଢ଼ିପାରି ନଥିଲେ । ଯେତେବେଳେ ତାଙ୍କୁ ମୋଟେ ତେର ବର୍ଷ, ସେତେବେଳେ ବାପା ମାଇକେଲ୍‌ଙ୍କୁ ନେଇ ଲଣ୍ଡନ ସହରକୁ ଚାଲିଗଲେ । ପାଠ ପଢ଼ିଥିଲେ ସିନା ସହରରେ କେଉଁଠି ଚାକରୀଟିଏ ମିଳନ୍ତା । ଅପାଠୁଆ ଲୋକକୁ ଚାକରୀ ମିଳିବ କୁଆଡ଼ୁ ?

ସେ ଯାହାହେଲେ ବି ମଣିଷର ପେଟ ଚିନ୍ତା ଆଗ । ପେଟ ପୂରିଲେ ସିନା କିଛି ବୁଦ୍ଧି ଦିଶିବ । ହେଲେ ସୁଯୋଗକୁ ମାଇକେଲ୍‌ଙ୍କୁ ଗୋଟିଏ ବହି ଦୋକାନରେ କାମ ମିଳିଗଲା । ସେ ବହି ବ୍ୟବସାୟୀଙ୍କ ପାଖରେ ରହି ବହି ବନ୍ଧାଇ କାମ ଶିଖିଲେ । ତା ପରେ ବୁଲିବୁଲି ଖବରକାଗଜ ବିକିଲେ । ବହି ବନ୍ଧାଇ କରିବା ବେଳେ ଓ ଖବରକାଗଜ ବିକିବା ସମୟରେ ସେ ବହି ଓ କାଗଜ ଏପଟ ସେପଟ ଓଲଟାଇ ପଢ଼ୁଥାଆନ୍ତି ।

ହେଲେ ବିଜ୍ଞାନ ସମ୍ବନ୍ଧୀୟ ବହିଟିଏ ପାଇଲେ ସେ ମନେ ମନେ ଖୁସି ହୋଇ ରାତି ଦିନ ଲାଗି ତାକୁ ପଢ଼ିଯାଆନ୍ତି । ସେ ସମୟରେ ଭୋକ ଶୋଷ ତାଙ୍କୁ ଲାଗେନା ।

ଦିନେ ଲଣ୍ଡନ ସହରରେ ରୟାଲ ସୋସାଇଟି ଆନୁକୂଲ୍ୟରେ ଏକ ବିଜ୍ଞାନ ଆଲୋଚନା ଚକ୍ର ଚାଲିଥାଏ । ସେଠାକୁ ବକ୍ତା ହିସାବରେ ଆସିଥାନ୍ତି ପ୍ରସିଦ୍ଧ ବୈଜ୍ଞାନିକ ହାମ୍ଫ୍ରି ଡାଭି । ମାଇକେଲ୍‌ଙ୍କ ବିଜ୍ଞାନ ଚର୍ଚ୍ଚା ଶୁଣିବାରେ ଆଗ୍ରହ ଜାଣି ମାଲିକ ତାଙ୍କପାଇଁ ଟିକେଟ୍‌ଟିଏ କଣାଇ ଦେଲେ । ମାଇକେଲ୍ ହାମ୍ଫ୍ରି ଡାଭିଙ୍କ ବିଜ୍ଞାନ କଥା ଶୁଣିଲେ । ସେଥିରେ ତାଙ୍କ ମନ ଅଧିକ ଧରିଲା ନାହିଁ । ସେ ମନକୁ ମନ ଭାବିଲେ, ଜୀବନରେ କେବଳ ବହି ବନ୍ଧେଇ କରି ବା ପଇସା ବନ୍ଧୀକରି ସମାଜର ଉନ୍ନତି କରିହେବ ନାହିଁ । ଯିଏ ମଣିଷ ଜୀବନ ପାଇ ନିଜ ଜାତିଭାଇଙ୍କର କିଛି ଉପକାର କରି ନ ପାରିଲା, ସେ ଜୀବନ ଥିଲେ କେତେ ନଥିଲେ କେତେ ?

ହାମ୍ଫ୍ରି ଡାଭିଙ୍କ ଭାଷଣ ଶୁଣି ସେ ଏମିତି ପାଗଳ ହୋଇଗଲେ ଯେ ଶେଷରେ ସେ ନିଜେ ଚିଠିଟିଏ ଲେଖି ବୈଜ୍ଞାନିକ ଡାଭିଙ୍କ ପାଖକୁ ପଠାଇଲେ । ସେ ଚିଠିରେ ଲେଖାଥିଲା—

ସମ୍ମାନନୀୟ ମହାଶୟ,

ମୋର ପ୍ରଣାମ ନେବେ । ମୁଁ ଜଣେ ଗରିବ ଚାକର । ତଥାପି ଆପଣଙ୍କ ଭାଷଣ ଶୁଣିଲା ପରେ ମୋ ମନ ହାଣ୍ଟୁଛି ଆପଣଙ୍କ ପାଖରେ କିଛି ଗୋଟାଏ ଚାକିରୀ କରିବାକୁ । ସ୍କୁଲ,

କଲେଜ ହତା ନ ମାଡ଼ିଲେ ବି ବିଜ୍ଞାନ କଥା, ଗଳ୍ପ ବା ଭାଷଣ ଶୁଣିଲେ ମୋ' ମନ କାହିଁକି ସେ ଆଡ଼କୁ ଟାଣି ହୋଇ ଯାଉଛି । ଏ ମୋର ପାଟିର କଥା ନୁହେଁ, ହୃଦୟର କଥା । ଆପଣଙ୍କ ଅନୁଷ୍ଠାନରେ ଯଦି କିଛି ଛୋଟିଆ ଚାକିରୀ ମିଳିଯାଆନ୍ତା, ମୁଁ ଭାରି ଖୁସି ହୁଅନ୍ତି । ମୋ' ପରି ଚାକର ଜୀବନରେ ଶାନ୍ତି ନାହିଁ । କିନ୍ତୁ ଆପଣଙ୍କ ସାନ୍ନିଧ୍ୟ ହିଁ ମନକୁ ଶାନ୍ତି ଦେଇପାରିବ ବୋଲି ମୋର ଆଶା । ଆଶା, ନିରାଶ କରିବେନି ।

କଥାରେ ଅଛି—'ଏ ମନ ଖୋଜୁଥାଇ ଯାହା, କାଳେ ପ୍ରାପତ ହୁଏ ତାହା' । ମାଇକେଲ୍ ଚିଠିଟି ପଠାଇ ଦେଇ ଉତ୍ତରକୁ ଚାତକ ପରି ଚାହିଁ ରହିଥାଆନ୍ତି । ହେଲେ ଭଗବାନଙ୍କ ମାୟା ବଡ଼ ବିଚିତ୍ର । କିଛି ଦିନ ପରେ ମାଇକେଲ୍ ଚିଠି ପାଇଲେ ଓ ଚାକିରୀ ବି ପାଇଲେ । ତାଙ୍କର ଚାକିରୀ ହେଲା ହାମ୍ଫ୍ରି ଡ଼ାଭିଙ୍କ ରୟାଲ ସୋସାଇଟି ବିଜ୍ଞାନାଗାରରେ ଥିବା ମଇଳା ବୋତଲ ସଫା କରିବା ।

ମାଇକେଲ୍ ବୋତଲ ସଫା କରୁ କରୁ ସେ ବିଜ୍ଞାନଗାରରେ ଥିବା ରାସାୟନିକ ଜିନିଷଗୁଡ଼ିକୁ ଏପଟ ସେପଟ କରି ସେଥିରୁ କିଛି ନୂଆ ଚିଜ ଖୋଜି ବାହାର କରିବାକୁ ଚେଷ୍ଟା ଚଳାଇଥାଆନ୍ତି । ଏମିତି କେତେ ବର୍ଷ ବିତିଯିବା ପରେ ମାଇକେଲ୍ ହାମ୍ଫ୍ରି ଡାଭିଙ୍କ ଅପାର କରୁଣା ଓ ଭଗବାନଙ୍କ ଆଶୀର୍ବାଦରୁ ରୟାଲ୍ ସୋସାଇଟିର ସଭାପତି ହେଲେ । ବୋତଲ ସଫା କରିବା ଚାକର ପିଲା ରୟାଲ ସୋସାଇଟିର ସଭାପତି !! ଏହା ସେହି ଭଗବାନଙ୍କ ବିଚିତ୍ର ଲୀଳା ନୁହେଁ ଆଉ କଣ ?

ହେଲେ ଜାଣିଛୁନା ଗୁନା, ମାଇକେଲ୍ କାହିଁକି ଓ କିମିତି ଏତେ ଉଚ୍ଚକୁ ଉଠି ପାରିଲେ ? ତାର କାରଣ ହେଲା, ମାଇକେଲ୍ ଯେଉଁ କାମ କରନ୍ତି, ମନଧ୍ୟାନ ଦେଇ କରନ୍ତି । ସବୁବେଳେ କିଛି ନୂଆ ଜିନିଷ ଆବିଷ୍କାର କରିବା ଆଶା ତାଙ୍କ ମନରେ ଥାଏ । ମନ ସାଙ୍ଗକୁ ସେ ଚେଷ୍ଟା ବି ଚଲାଇ ଥାଆନ୍ତି । ଦିନ, ରାତି ସବୁବେଳେ ସେ ଲାଗିଥାନ୍ତି ତାଙ୍କର କାମରେ । କିନ୍ତୁ ଆମର ଧନ ଥାଇ ବି ଆମେ ବୈଜ୍ଞାନିକଟିଏ ହୋଇ ପାରୁନେ । ଯୋଗ୍ୟତା ଥାଇ ଚାକିରୀ ପାଇ ପାରୁନେ । ତାର କାରଣ ହେଲା, ଆମ ଭିତରେ ଅଧ୍ୟବସାୟର ଅଭାବ । ଆମେ ସବୁ ଅଳସୁଆ ।

ପରେ ପରେ ମାଇକେଲଙ୍କ ପ୍ରତିଭା ବିଜୁଳି ପରି ଚାରିଆଡେ ଖେଳିଗଲା । ସେ ହୋଇଗଲେ ଲଣ୍ଡନ ରସାୟନ ବିଭାଗର ପ୍ରଫେସର । ଆଜିକାଲି ପରି ଯୁଗ ହୋଇଥିଲେ ସେ ସେମିତି ବୋତଲ ସଫା କରି ଜୀବନ ବିତାଇ ଥାଆନ୍ତେ । ହଁ, ଏ ଯୁଗରେ ପରା ଚାକିରୀ ପାଇବାକୁ ହେଲେ ଯୋଗ୍ୟତା ସାଙ୍ଗକୁ କେତେ ଲାଞ୍ଚଲାଞ୍ଚା ଅଛି । କେତେ ବଡବଡ଼ଆଙ୍କ ଘରକୁ ଥରକୁ ଥର ଦୌଡ଼ିବାକୁ ପଡୁଛି । ପୁଣି ଚାକିରୀ ମିଳିଲେ କେତେ ଭୋଜିଭାତ, କେତେ ମଜା କରିବାକୁ ମନ ଟାଣୁଛି । କିନ୍ତୁ ମାଇକେଲ୍ ନିଜେ ଜଣେ ପ୍ରଫେସର୍ ହୋଇଗଲେ ବି ମନରେ କେବେ ଗର୍ବ କରି ନଥିଲେ ।

ମାଇକେଲ୍ ଫାରାଡେ ଶେଷରେ ଏମିତି ଗୋଟିଏ ସ୍ତରକୁ ଆସି ପହଞ୍ଚିଲେ, ଯେଉଁଠି ସେ ତାଙ୍କ ଗୁରୁ

ହମ୍ପ୍ରି ଡାଭିଙ୍କୁ ମଧ୍ଯ ବିଜ୍ଞାନ ତଥ୍ୟ କ୍ଷେତ୍ରରେ ସମାଲୋଚନା କରିପାରିଲେ । କିନ୍ତୁ ସେ ସମାଲୋଚନା ଓ ଆମ ଭିତରେ ଚାଲୁଥିବା ସମାଲୋଚନା ଭିତରେ ଆକାଶ ପାତାଳ ପ୍ରଭେଦ । ଆମର ଜ୍ଞାନ ନଥାଇ ଆମେ ଅନ୍ୟକୁ ସମାଲୋଚନା କରୁ । ଏଥିରେ ନିଜର ଦୁର୍ବଳତାର୍କୁ ପଦାରେ ପକାଇବା ସାର ହେଉଛି । କଥା ଏ କାନରୁ ସେ କାନକୁ ଯାଇ ବାଟରେ ଘାଟରେ ଗଡ଼ୁଛି । ପ୍ରତ୍ୟେକ କଥା ଓ କାମରେ ଗୋଡ ଟଣାଟଣି କାରସାଦି । ଆଜିକାଲିକା ପରି ଯୁଗ ହୋଇଥିଲେ ମାଇକେଲ୍ ବି ବୋଧେ ସେହି ଅବସ୍ଥା ଭୋଗୁଥାଆନ୍ତେ ।

ସବୁଠୁ ମଜା କଥା ହେଲା, ଥରେ ହାଂପ୍ରି ଡାଭିଙ୍କୁ ପ୍ରଶ୍ନ ପଚରାଗଲା—ଆପଣଙ୍କର ବିଜ୍ଞାନ ଜଗତକୁ ଦାନ କଣ ? ସେ ଉତ୍ତରରେ କହିଲେ—ମୋର ବିଜ୍ଞାନ ଜଗତକୁ ଶ୍ରେଷ୍ଠ ଅବଦାନ ହେଉଛି ଜଣେ ଅପାଠୁଆ, ଗରୀବ, ଅସହାୟ ବହିବନ୍ଧାଳୀ ମାଇକେଲ୍ ଫାରାଡେ, ଯେ କି କୌଣସି କଲେଜର ଛାତ୍ର ନ ମାଡ଼ି ବି ଜଣେ ବିଶିଷ୍ଟ ବୈଜ୍ଞାନିକ ହୋଇ ପାରିଛନ୍ତି । ଆଉ ଥରେ ମାଇକେଲଙ୍କୁ ପ୍ରଶ୍ନ ପଚରା ଗଲା ଯେ ଆପଣଙ୍କ ଶେଷ ଇଚ୍ଛା କଣ ? ସେ କହିଲେ—ମୋର କବର ଉପରେ କୌଣସି ସମାଧି ପୀଠ ଓ କୌଣସି ସ୍ଥାନରେ ପ୍ରତିମୂର୍ତ୍ତି ରହିବ ନାହିଁ ।

କିନ୍ତୁ ଆଜିକାଲିର ଗଜରି ଉଠୁଥିବା ନେତାଙ୍କୁ ଏ ପ୍ରଶ୍ନ ପଚାରିଲେ, ସେ କହନ୍ତା ତାର ଓଲଟା । ଏ ଯୁଗରେ କାମ ନ କରି ନାଁ ନେବାବାଲା ବେଶୀ । ପ୍ରକୃତରେ ଯାହାର

ଯୋଗ୍ୟତା ଥାଏ, ସେ କେବେ ନାଁ ନେବାକୁ ରାଜି ହୁଏନା'। ଯାହାର ଯୋଗ୍ୟତା ନାହିଁ ବା ଯିଏ ନାଁ ନେବାର ଯୋଗ୍ୟ ନୁହେଁ, ସେ ନାଁ ପାଇବା ପାଇଁ କୁରୁଳି ଉଠେ। ଏହା ହେଲା ଆଜିର ଦୁନିଆ।



[ ସାଇକେଲ ଡାଇନାମୋ ]

ମାଇକେଲ୍ ଫାରାଡେଙ୍କ ଯୋଗୁଁ ଆମେ ବିଜୁଳି ଆଲୁଅ ପାଉଛେ। ଏଥିରୁ କଳକବ୍‌ଜା, ଗାଡ଼ି, ମୋଟର ସବୁ ଚାଲୁଛି। ବିଜୁଳି ଶକ୍ତି ଯଦି ଆମର ଦିନେ ବନ୍ଦ ହୋଇଯିବ, ତେବେ ଆମେ କେତେ ଅସୁବିଧାରେ ପଡ଼ିବା, ତା' କଳ୍ପନା ହେଉନି।

ମାଇକେଲଙ୍କ ଜୀବନୀ ତ ଶୁଣିଲୁ। ଜୀବନରେ ବଡ଼ ଲୋକ ହେବାକୁ ହେଲେ କେତେ କଷ୍ଟ, କେତେ ଛୋଟ କାମ

କରିବାକୁ ହେବ । ମାଇକେଲ୍ ଯଦି ନିଜ ମନରେ କେବଳ କଳ୍ପନା କରି ଚାଲିଥାଆନ୍ତେ, ତେବେ ସେ କିଛି ବି ଫଳ ପାଇ ନଥାଆନ୍ତେ । ତେଣୁ ମନ ସହିତ କାମ କରିବା ଦରକାର । ଏ ଦୁନିଆରେ ଧନୀ ବା ଜ୍ଞାନୀ ହେଉଛି ସିଏ, ଯାହାର ମନ ଉଚ୍ଚ– ଯାହାର ଭାବନା ଉଚ୍ଚ । ଏ ସମ୍ପତ୍ତି ଆଜି ଅଛି କାଲିକି ନଥିବ । କିନ୍ତୁ ମନକୁ ନେବାର ଅଧିକାର କାହାର ନାହିଁ ।

ଏବେ ମାଇକେଲ୍ଙ୍କ କଥା ବୁଝିଲୁ ତ ! ସେ ଗରିବ ହେଲେ ବି ମନ ବଳ ଓ ନିଜର ଅଧ୍ୟବସାୟ ଯୋଗୁଁ କେମିତି ନୂଆ ତଥ୍ୟ ବାହାର କରି ଜଗତରେ ଅମର ହୋଇ ପାରିଲେ । ତାଙ୍କ ମନରେ ଯାହା ଥିଲା, ଶେଷରେ ସେ ସେୟା କରି ସାରା ପୃଥିବୀକୁ ଦେଖାଇ ଦେଲେ ।



# କଥାର ନୁହେଁ ମୁଁ
# କାମର ଲୋକ



[ ହାମ୍ଫ୍ରି ଡାଭି ]

ଥରେ ବଡ ସହରଟିଏ । ନାଁ ତାର ପେନ୍‌ଜାନ୍ । ସହର ମଝିରେ ଗୋଟିଏ ସୁନ୍ଦର ପାର୍କ । ଚାରିଆଡେ କିସମ କିସମର ଗଛଲତା, ଫୁଲଗଛ । ତଳେ ନରମ ଘାସର ଗାଲିଚା । ସେହି ଘାସ ଗାଲିଚା ଉପରେ ଠିଆ ହୋଇ ରହିଛି ଗୋଟିଏ ବିଶାଳକାୟ ପ୍ରତିମୂର୍ତ୍ତି । ମୂର୍ତ୍ତିଟି ଜୀବନ୍ତ ଦେଖାଯାଉଥିଲେ ବି ସେ ନୀରବ, ନିଶ୍ଚଳ । ଯୁବ ସମାଜ ସେ ବିରାଟ ମୂର୍ତ୍ତିଟି ଆଡ଼େ ଚାହିଁ ରହିଥାନ୍ତି । ହଠାତ୍ ସେମାନଙ୍କ ଆଖି ପଡ଼ିଲା ମୂର୍ତ୍ତିର ପାଦ ଆଡକୁ । ସେଠି ଲେଖାଥିଲା 'ହାମ୍ଫ୍ରି ଡାଭି' ।

ଯୁବ ସମାଜର ପ୍ରଶ୍ନ ହେଲା—ତା ହେଲେ ଏ କ'ଣ ହାମ୍ଫ୍ରି ଡାଭି ? ସେ କାହିଁକି ପୂଜ୍ୟ ? ମାନବ ସମାଜ ପାଇଁ ତାଙ୍କର ଦାନ କ'ଣ ? କିନ୍ତୁ ଉତ୍ତର ନପାଇ ସେମାନେ ପେଶିବା ଅବସ୍ଥାରେ ।

ହଠାତ୍ ମୃଦୁ ସ୍ୱରରେ ଉତ୍ତର ଆସିଲା—ରହ, ଶୁଣ ମୋ' ଜୀବନୀ । ମୁଁ ହେଉଛି ହାର୍ମି ଡାଭି । ଜନ୍ମ ମୋର ଅଷ୍ଟାଦଶ ଶତାବ୍ଦୀର ସପ୍ତମ ଦଶକରେ, ପେନ୍‌ଜାନ୍ ସହରରେ । ମୋର ବାପା ରବର୍ଟ ଡାଭି ଜଣେ ନିମ୍ନ ମଧ୍ୟବିତ୍ତ ପରିବାରର ଲୋକ । ମୁଁ ଛାତ୍ର ଥିବାବେଳେ ଶିକ୍ଷକଙ୍କ ସହ ପାଠ ବିଷୟ ନେଇ ବହୁ ଯୁକ୍ତିତର୍କ କରେ । ସାର୍ ସାମାନ୍ୟ କାରଣରୁ ମୋର କାନ ମୋଡ଼ି ଦିଅନ୍ତି ।

ଦିନେ ମୁଁ କାନଦୁଇଟି ଉପରେ ବ୍ୟାଣ୍ଡେଜ୍ ଗୁଡ଼ାଇ ଶ୍ରେଣୀରେ ବସିଛି । ସାର୍ ମତେ ଦେଖି ପଚାରିଲେ—ଏହା କ'ଣ ?

ମୁଁ କହିଲି—ସାର୍, କାନ ଦୁଇଟିକୁ ଧ୍ୱଂସମୁଖରୁ ରକ୍ଷା କରିବାର ଏହା ହେଲା ସୁବ୍ୟବସ୍ଥା । ମୋ' ଉତ୍ତର ଶୁଣି ସାର୍ ଟିକେ ହସିଦେଲେ ।

ହଁ, ମୁଁ ମଧ୍ୟ ତୁମପରି ସ୍କୁଲରୁ ଫେରିବା ପରେ ନଦୀ କୂଳରେ ପହଞ୍ଚୁଥିଲି । ବଣ ଭିତରେ ସାଙ୍ଗମାନଙ୍କ ସହ ଖେଳାଖେଳି କରି, ଗପ ଶୁଣି ଆନନ୍ଦ ପାଉଥିଲି । କିନ୍ତୁ ତୁମମାନଙ୍କ ପରି ମୁଁ ଦୁଷ୍ଟ ନଥିଲି । ସାର୍‌ଙ୍କର ଭଲ ଗୁଣ ସଂଗ୍ରହ କରିବା ଥିଲା ମୋର ଉଦ୍ଦେଶ୍ୟ । ଅବସର ସମୟ ମୁଁ ନଷ୍ଟ ନକରି ଭଲ ଜିନିଷ ଚିନ୍ତା କରିବା ହେଲା ମୋର ସ୍ୱଭାବ । ମୁଁ କେବେ ସାର୍‌ମାନଙ୍କୁ ଅପମାନ କରିନି । ତାଙ୍କ ଉପଦେଶ ଅମାନ୍ୟ କରିନି । ଶିକ୍ଷକମାନେ ହେଲେ ଗୁରୁ, ପିତା ସମାନ । ଜୀବନରେ ବଡ଼ ହେବାକୁ ହେଲେ ଦରକାର ତାଙ୍କ ଆଶୀର୍ବାଦ । ବର୍ତ୍ତମାନ ତୁମ ଓ ମୋ' ଭିତରେ ଏତକ

ଉପାଭ୍ । ଭାଇ, ଟିକିଏ ଚିନ୍ତା କର ତ ଦେଖି ! ମୋର ଜୀବନୀ ଜାଣିଲେ ବୋଧହୁଏ ନିଜ ଭିତରେ ଥିବା ଭୁଲକୁ ଛାଡ଼ି ଭଲ ହେବାକୁ ଆଗେଇବ । ମୁଁ କେବେ କଥାର ଲୋକ ନଥିଲି, ଥିଲି କାମର ଲୋକ ।

ହଁ, ଶୁଣ ! ସେ ସମୟରେ କୋଇଲା ଖଣିରେ କାମ କରୁଥିବା ଶ୍ରମିକମାନଙ୍କର ଜୀବନ ନିରାପଦ ନଥିଲା । ଖଣି ଭିତରେ ଅନେକ ସମୟରେ ଅଗ୍ନିଜନିତ ଦୁର୍ଘଟଣା ଘଟୁଥାଏ । ଏହି ଦୁର୍ଘଟଣାରୁ ରକ୍ଷା କେମିତି ହେବ, ସେ ବିଷୟରେ ମୁଁ ବିଶେଷ ଚିନ୍ତା କରୁଥାଏ ।



[ ସେଫ୍ଟି ଲ୍ୟାମ୍ପ୍ ]

ମୁଁ ଦେଖିଲି ଦୁର୍ଘଟଣାର ମୂଳ କାରଣ ହେଲା ଖଣି ଭିତରେ ଆଲୋକର ଅସାବଧାନତା । ଯଦି ତା' ପ୍ରତି ଦୃଷ୍ଟି ଦିଆଯାଏ, ତେବେ ଦୁର୍ଘଟଣା ଆଉ ଘଟିବ ନାହିଁ । ସେଥିପାଇଁ ମୁଁ ନୂତନ ପଦ୍ଧତି 'ସେଫ୍ଟି ଲ୍ୟାମ୍ପ୍' ବା ନିରାପଦ ଆଲୁଅ

ଆବିଷ୍କାର କଲି । ଏହା ' ପୃଥିବୀର ସର୍ବତ୍ର ବ୍ୟବହୃତ ହେଲା । ପ୍ରଥମତଃ ଗ୍ୟାସ୍ ଦୀପକୁ ଏକ ନଳୀ ଭିତରେ ଆବଦ୍ଧ କରାଯାଏ । ତେବେ ବିସ୍ଫୋରଣର ସମ୍ଭାବନା ନାହିଁ । ଦ୍ୱିତୀୟତଃ ତାହା ଶୀତଳ ପରିବେଶରେ ରହିବା ଦରକାର । ତୃତୀୟତଃ ଅମ୍ଳଜାନ କମ୍ ରହିଲେ ବିସ୍ଫୋରଣ ହେବନାହିଁ । ମୋର ଏହି ଆବିଷ୍କାର ପାଇଁ ଲଣ୍ଡନର ଖଣିମାଲିକମାନେ କୋଟି କୋଟି ଟଙ୍କା ଉପହାର ଦେବାକୁ ପ୍ରସ୍ତୁତ ଥିଲେ ମଧ୍ୟ ଟଙ୍କାଟିଏ ମୁଁ ଗ୍ରହଣ କରିନି । ନିରାପଦ ଆଲୁଅ ଆବିଷ୍କୃତ ନ ହୋଇଥିଲେ କୋଇଲା କି ଲୁହା ଆମକୁ ମିଳନ୍ତା ନାହିଁ । ଏପରିକି, କୌଣସି କଳକାରଖାନା ମଧ୍ୟ ଚଳନ୍ତା ନାହିଁ କି ଆଧୁନିକ ସଭ୍ୟତା ଅଗ୍ରସର ହୁଅନ୍ତା ନାହିଁ ।

ମତେ ଯେତେବେଳେ ମୋଟେ ପନ୍ଦର ବର୍ଷ, ସେତେବେଳେ ପରିବାରର ସମସ୍ତ ଦାୟିତ୍ୱ ପଡ଼ିଲା ମୋ ଉପରେ । ତଥାପି ଡ଼କ୍ଟର ବୋରଲସ୍ଙ୍କଠାରୁ ରସାୟନ ବିଦ୍ୟା, ଶରୀର ବିଦ୍ୟା ଓ ଧର୍ମତତ୍ତ୍ୱ ଆଦି ଶିକ୍ଷାକଲି । ତା ଭିତରୁ ରସାୟନିକ ବିଦ୍ୟା ପ୍ରତି ମୋର ବିଶେଷ ଆଗ୍ରହ ଥିଲା ।

୧୭୯୮ ମସିହାରେ ବ୍ରିଷ୍ଟଲ୍‌ର ପରୀକ୍ଷାଗାର ପ୍ରତିଷ୍ଠା ହୋଇ ଗ୍ୟାସ୍‌ର ପ୍ରଭାବ କେମିତି ମଣିଷ ଉପରେ ପଡୁଛି, ତାହା ପରୀକ୍ଷା କରିଥିଲି । ସେଠୁ ଆବିଷ୍କାର କଲି ହସ ଗ୍ୟାସ୍ । ଏହି ହସ ଗ୍ୟାସ୍‌କୁ ଶୁଙ୍ଘିବା ଦ୍ୱାରା ମଣିଷ ଖାଲି ହସିବାକୁ ଲାଗେ । ଯଦି ଏହା ବେଶି ପରିମାଣରେ ଶୁଙ୍ଘାଯାଏ, ତା ହେଲେ ମଣିଷ ହସି ହସି ଶେଷରେ ଚେତା ହରାଇ ପଡ଼ିଯାଏ । ଏହି ଗ୍ୟାସ୍‌କୁ ପ୍ରୟୋଗ କରି ମୁଁ କେତେକ ଦାନ୍ତ ରୋଗୀଙ୍କ ଦାନ୍ତ

ଉପାଡ଼ିବାରେ ସମର୍ଥ ହୋଇ ପାରିଲି । ଏଥିରେ ଲଣ୍ଡନ ସହର ସାରା ମୋର ଖ୍ୟାତି ବ୍ୟାପିଗଲା । ପରେ ପରେ ୧୮୦୦ ମସିହାରେ ଲଣ୍ଡନର ରୟାଲ୍ ଇନ୍‌ଷ୍ଟିଚ୍ୟୁଟ୍‌ରେ ମୁଁ ଅଧ୍ୟାପକ ଭାବେ ନିଯୁକ୍ତି ପାଇଲି ।



[ ଗ୍ୟାସ୍ ଶୁଙ୍ଘିବା ]

ଦିନେ ବଡ ମଜା ଘଟଣା ଘଟିଲା । କ୍ଲାସରେ ମୁଁ ଏହି ଗ୍ୟାସ୍‌କୁ ଛାତ୍ରମାନଙ୍କ ଉପରେ ଛାଡ଼ିଲି । ଗ୍ୟାସ୍ ପ୍ରଭାବରେ କେତେ ଛାତ୍ର ମାନଙ୍କ ଡପର ଟେବୁଲ୍, ଚୌକି ଉପରେ ଡେଇଁବାକୁ ଲାଗିଲେ । କେତେ ଛାତ୍ର ହସି ହସି ଭାଷଣ ଦେବାକୁ ଲାଗିଲେ । କେତେ ନିଜ ନିଜ ଭିତରେ ଝଗଡା ଆରମ୍ଭ କରିଦେଲେ ଓ ଆଉ କେତେ ଛାତ୍ର କ୍ଲାସ୍‌ରେ ଥିବା ଝିଅପିଲାମାନଙ୍କ ପାଖକୁ ଉଠିଙ୍କି ଆସିଲେ । କିନ୍ତୁ ମୁଁ କମ୍ ଗ୍ୟାସ୍ ଶୁଙ୍ଘି ଥିବାରୁ ଛାତ୍ରଛାତ୍ରୀମାନେ କ'ଣ କରୁଥିଲେ ଜାଣି ପାରୁଥିଲି ।

ହସ ଗ୍ୟାସ୍ ଆବିଷ୍କାର ପରେ ମୋର ବୈଜ୍ଞାନିକ ଭାଇ ଡକ୍ଟର୍ ସିମ୍ପସନ୍ କ୍ଲୋରୋଫର୍ମ ଗ୍ୟାସ୍ ଆବିଷ୍କାର କଲେ । ଯାହା ଦ୍ୱାରା ହଜାର ହଜାର ରୋଗୀ ବିନା ଯନ୍ତ୍ରଣାରେ ଅପରେସନ୍ ହୋଇପାରୁଛନ୍ତି ।

ମୋର ଆବିଷ୍କାର ପାଇଁ ମୁଁ ବହୁତ ସମାଲୋଚନାର ପାତ୍ର ହେଲି । ତଥାପି ମୁଁ ମନବଳ ହରାଇ ନଥିଲି । ସେମିତି ତୁମେ ନିଜକୁ ଗରିବ କିମ୍ବା ଦୁର୍ବଳ ଅନୁଭବ କରିବନି । ମନ ଦୁର୍ବଳ ହେଲେ ତୁମେ ଭାଙ୍ଗିପଡ଼ିବ । ହଁ, ଅନ୍ୟକୁ ଅଯଥା ସମାଲୋଚନା କେବେ କରିବନି । ଏହାଦ୍ୱାରା ନିଜର କ୍ଷତିହୁଏ ।

ଏତକ ଉତ୍ତର ପରେ ଆଉ କିଛି ଉତ୍ତର ଶୁଣାଗଲା ନାହିଁ । ଯୁବ ସମାଜ ବଲବଲ କରି ସେ ବିରାଟ ହାର୍ମ୍ପ୍ରଡାଭିଙ୍କ ପ୍ରତିମୂର୍ତ୍ତିକୁ ଅନାଇ ରହିଥାନ୍ତି । ସେମାନେ ଏଥର ଶିଖିଲେ ଯେ କଥା ଅପେକ୍ଷା କାମ ହିଁ ବଡ଼ । ସେଥିପାଇଁ ହାର୍ମ୍ପ୍ରଡାଭି ଆଜି ପୂଜ୍ୟ ଓ ଅମର ।



# କଳିଯୁଗର ଇନ୍ଦ୍ର



[ ଆଲ୍‌ଫ୍ରେଡ୍ ନୋବେଲ୍ ]

ଇନ୍ଦ୍ରଙ୍କ କଥା କିଏ ବା ନ ଜାଣେ ? ସେ ହେଉଛନ୍ତି ସବୁ ଦେବତାଙ୍କଠାରୁ ଶ୍ରେଷ୍ଠ । ତାଙ୍କର ଆୟୁଧ ହେଲା ବଜ୍ର । ଏ ବଜ୍ର ନାଁ ପଡ଼ିଲେ ସମସ୍ତଙ୍କ ଛାତି ଧଡ଼ପଡ଼ । ବଜ୍ର ପ୍ରହାରରେ ପାହାଡ଼ ଚୂନା ହୋଇଯାଏ । ପୃଥିବୀ ରସାତଳକୁ ଚାଲିଯାଏ । ମାଟିରୁ ପାଣି ବାହାରି ଆସେ । ତେଣୁ ମନୁଷ୍ୟ, ଦେବତା ଓ ଅସୁର ସମସ୍ତେ ଇନ୍ଦ୍ରଙ୍କୁ ଡରନ୍ତି ।

ହେଲେ କଳିଯୁଗରେ ବି ଇନ୍ଦ୍ର ଅଛନ୍ତି । ସେ କିଏ ଜାଣ ? ସେ ହେଉଛନ୍ତି ବୈଜ୍ଞାନିକ ଆଲ୍‌ଫ୍ରେଡ୍ ନୋବେଲ୍ । ସେ ବଜ୍ରପରି ଡ଼ିନାମାଇଟ୍ ନାମକ ଏକ ବିସ୍ଫୋରକ ଉଦ୍ଭାବନ କରିଛନ୍ତି । ଏହାଦ୍ୱାରା ବଡ଼ ବଡ଼ ପାହାଡ଼ ଆଖି ପିଛୁଳାକେ ଭାଙ୍ଗି ଚୂନା ହୋଇଯାଏ । ଦୁର୍ଗମ ପର୍ବତ ଭିତରେ ସୁଡ଼ଙ୍ଗ

ତିଆରି କରିହୁଏ । ଯା଼ା ଫଳରେ ଲୋକ ସମାଜର ବହୁତ ସୁବିଧା ହୁଏ ।

ଡ଼ିନାମାଇଟ୍‌ର ଜନ୍ମ କଥା ବଡ ମଉଜିଆ । ଆଲ୍‌ଫ୍ରେଡ୍ ବାପାଙ୍କର ଗୋଟିଏ ବଡ଼ିଆ ବାରୁଦ କାରଖାନା ଥାଏ । ସେଠାରେ ଟର୍ପେଡୋ ନାମକ ଏକ ବାରୁଦ ଅସ୍ତ୍ର ତିଆରି



ହୁଏ । ଏ ଅସ୍ତ୍ର ଯୁଦ୍ଧ ସମୟରେ ଜଳ ଜାହାଜକୁ ଧ୍ୱଂସ କରିବା ପାଇଁ ବ୍ୟବହୃତ ହୁଏ ।

ଆଲ୍‌ଫ୍ରେଡ୍ ପିଲ୍‌ବେଲ୍କୁ ବାରୁଦ କାରଖାନା ବିଷୟରେ ଜାଣିବାକୁ ଆଗ୍ରହ ପ୍ରକାଶ କରିଥିଲେ । ଏହା ପୂର୍ବରୁ ନାଇଟ୍ରୋଗ୍ଲିସେରିନ୍ ନାମକ ଏକ ତରଳ ପଦାର୍ଥ ଆବିଷ୍କୃତ ହୋଇ ସାରିଥିଲା । ଏହା ବଡ ମାରାତ୍ମକ ଦ୍ରବ୍ୟ । ଆଲଫ୍ରେଡ୍ ପ୍ରଥମେ ଏହି ନାଇଟ୍ରୋଗ୍ଲିସେରିନ୍ ବିଷୟରେ ଗବେଷଣା ଆରମ୍ଭ କଲେ ।

ସେ ଦେଖିଲେ ଯେ ଉକ୍ତ ଶକ୍ତିଶାଳୀ ବିସ୍ଫୋରକ ପଦାର୍ଥକୁ ଯଦି ଭଲ କାର୍ଯ୍ୟରେ ଲଗାଯାଏ, ତେବେ ଅନେକ ଅସାଧ୍ୟ କାର୍ଯ୍ୟ ସହଜସାଧ୍ୟ ହୋଇ ପାରିବ । ଥରେ ସେ ଲାବୋରେଟୋରୀରେ ବସି ଗବେଷଣାରେ ବ୍ୟସ୍ତ ଥାଆନ୍ତି । ତାଙ୍କର ସହକର୍ମୀ ଗୋଟିଏ ବୋତଲରେ ତରଳ ନାଇଟ୍ରୋ-ଗ୍ଲିସେରିନ୍ ନେବା ବେଳେ ହଠାତ୍ ହାତରୁ ଖସି ତଳେ ପଡ଼ିଗଲା । ଏହା ବିସ୍ଫୋରଣ ଘଟାଇବା ଭୟରେ ସହକର୍ମୀ ଜଣକ ଖୁବ୍ ଜୋରରେ ଚିତ୍କାର କଲେ । ଏ ଚିତ୍କାର ଶୁଣି ଆଲ୍‌ଫ୍ରେଡ୍ ଧାଇଁ ଆସି ଦେଖନ୍ତି ତ ତାହା ତଳେ ପଡ଼ି ମଧ୍ୟ କିଛି ବିସ୍ଫୋରଣ ଘଟାଇନି । ଏହାର କାରଣ ଜାଣିବା ପାଇଁ ସେ ବାଲିରେ ପଡ଼ିଥିବା ନାଇଟ୍ରୋଗ୍ଲିସେରିନ୍‌ର କିଛି ଅଂଶ ନେଇ ପରୀକ୍ଷା ଆରମ୍ଭ କଲେ । ସେ ଏକ ସିଦ୍ଧାନ୍ତରେ ପହଞ୍ଚିଲେ ଯେ ଶୋଷଣ ଶକ୍ତି ଥିବା ଯେ କୌଣସି ବସ୍ତୁ ସହିତ ନାଇଟ୍ରୋ-ଗ୍ଲିସେରିନ୍ ଅତି ସହଜରେ ମିଶିଯାଏ । ତେଣୁ ଆଉ ବିସ୍ଫୋରଣର ଭୟ ରହେ ନାହିଁ ।

ଶେଷରେ ସେ ବାଲପଁର ଆଉ ଏକ ପଥରର ସନ୍ଧାନ ପାଇଲେ ଯେଉଁଥିରେ କି ଛୋଟ ଛୋଟ ଛିଦ୍ର ଅଛି । ଏ ଛିଦ୍ର ନାଇଟ୍ରୋଗ୍ଲିସେରିନ୍‌କୁ ଶୋଷଣ କରିପାରେ । ସେ ସମୟରେ କିସେଲ ଗୁରୁ ନାମକ ଅନ୍ୟ ଏକ ବିସ୍ଫୋରକ ଦ୍ରବ୍ୟ ଆବିଷ୍କୃତ ହେଲା । ସେ ଧୂମବିହୀନ ବାରୁଦ ବି ଆବିଷ୍କାର କରିଥିଲେ । ତାହାର ନାମ ବାଲିଷ୍ଟାଇଟ । ଏହାର ଚାହିଦା ଏତେ ବଢ଼ିଗଲା ଯେ ତାଙ୍କର ବିଜ୍ଞାନାଗାର କାରଖାନାରେ ପରିଣତ ହେବା ସାଙ୍ଗେ ସାଙ୍ଗେ ଆଲଫ୍ରେଡ୍‌ଙ୍କ ଚଳାଘର ଧନ ସମ୍ପତ୍ତିରେ ପରିପୂର୍ଣ୍ଣ ହୋଇଗଲା ।

ଏତେ ସମ୍ପତ୍ତିର ମାଲିକ ହୋଇ ବି ଆଲଫ୍ରେଡ୍ ବିବାହ କରି ନଥିଲେ । ଧନସମ୍ପତ୍ତି ସମସ୍ତେ ଅର୍ଜନ୍ତି । କିଏ ଧନ ବଳରେ ଜମିବାଡ଼ି କରେ ତ, କିଏ କୋଠାବାଡ଼ି କରେ । ପୁଣି କିଏ ବଡ଼ ବଡ଼ କଳକାରଖାନା କରି ଶିଳ୍ପପତି ହୁଏ ବା ବିଳାସବ୍ୟସନ କରେ । କିନ୍ତୁ ଆଲଫ୍ରେଡ୍ ତାହା କରିନଥିଲେ । ସେ ତାଙ୍କ ଜୀବନ କାଳ ଭିତରେ କୋଟି କୋଟି ଟଙ୍କା ଅର୍ଜିଥିଲେ । ତଥାପି ଅସହାୟ ଲୋକ ଦେଖିଲେ ତାକୁ ଖୋଲା ହାତରେ ଦାନ କରୁଥିଲେ । ସେ ଭାବୁଥିଲେ ଯେ ଦିନେ ନା ଦିନେ ମୃତ୍ୟୁ ସମସ୍ତଙ୍କୁ ଗ୍ରାସ କରିବ । ସମୟ କାହାରିକୁ ଅପେକ୍ଷା କରେନା । ତେଣୁ ସଞ୍ଚିତ ଧନର ସଦ୍‌ବ୍ୟବହାର କରିବା ପାଇଁ ସେ ସ୍ଥିର କଲେ ।

ତେଣୁ ସଞ୍ଚିତ ଅର୍ଥକୁ ଗୋଟିଏ ଟ୍ରଷ୍ଟ କରି ବିଶ୍ୱର କଲ୍ୟାଣ ପାଇଁ ଉତ୍ସର୍ଗ କରିଥିଲେ । ସଞ୍ଚିତ ପାଣ୍ଠିର ବର୍ତ୍ତମାନ୍

୭୫ କୋଟି ଟଙ୍କା ମଧ୍ୟରେ ଯେଉଁମାନେ ମାନବଜାତିର ମଙ୍ଗଳ ପାଇଁ କଷ୍ଟ କରି ଯାଇଛନ୍ତି, ସେମାନଙ୍କୁ ୧୯୦୧ ଠାରୁ ପୁରସ୍କାର ଦିଆଗଲା । ସମାଜରେ ଗୁଣୀମାନଙ୍କୁ ଉତ୍ସାହିତ କରିବା ହେଲା ଏହି ପୁରସ୍କାରର ଲକ୍ଷ୍ୟ ।

ସେ ଏକ ଉଇଲ୍ କଲେ ଯେ ଏହି ପାଞ୍ଚଗୋଟି ପୁରସ୍କାର ଦିଆଯିବ । ତାହାହେଲା ଭୌତିକ ବିଦ୍ୟା ( ଫିଜିକ୍ସ୍ ), ରାସାୟନିକ ବିଦ୍ୟା, ଶରୀର ବିଦ୍ୟା, ସାହିତ୍ୟ, କଳା ଓ ଶାନ୍ତି । ଏହି ପୁରସ୍କାର ସବୁ ଜାତି, ଧର୍ମ, ଦେଶ ନିର୍ବିଶେଷରେ ସମସ୍ତେ ପାଇପାରିବେ । ସେଥିପାଇଁ ମାନବ ଜାତି ଆଲ୍‌ଫ୍ରେଡ୍ ନୋବେଲ୍‌ଙ୍କ ନିକଟରେ ଋଣୀ ।

ସଂସାରର ବଡ ବିଚିତ୍ର ଲୀଳା । କିଏ ସବୁଦିନେ ରହିନାହିଁ କି ରହିବ ନାହିଁ । ରହିବ କେବଳ କରିଥିବା କର୍ମ । ସାରା ପୃଥିବୀର ଶିକ୍ଷିତ ସମାଜ ନୋବେଲ୍ ଶବ୍ଦ ଶୁଣିବା ମାତ୍ରେ ନୋବେଲ ପୁରସ୍କାର କଥା ମନେ ପକାନ୍ତି । ଏ ପୁରସ୍କାର ସମଗ୍ର ବିଶ୍ୱରେ ଏକ ସମ୍ମାନ ।

ଆଲ୍‌ଫ୍ରେଡ୍ ନୋବେଲ୍, ସୁଇଡେନ୍ ମହାନଗରୀ ଷ୍ଟୋକହୋଲମଠାରେ ୧୮୩୩ ମସିହାରେ ଜନ୍ମଗ୍ରହଣ କରିଥିଲେ । ୧୮୯୬ ମସିହାରେ ଇଟାଲି ଦେଶର ସନ୍‌ରେମା ସହରରେ ତାଙ୍କର ଦେହାନ୍ତ ହୋଇଥିଲା ।



# କୋଟିଏରୁ ଗୋଟିଏ



( ଆଇନ୍‌ଷ୍ଟାଇନ୍ )

ଆସନ୍ତାକାଲି ପାଇଁ ଜୋର୍‌ସୋରରେ ଆୟୋଜନ ଚାଲିଛି ବିଶିଷ୍ଟ ବୈଜ୍ଞାନିକ ଆଇନ୍‌ଷ୍ଟାଇନ୍ ଆସିବେ ବୋଲି। ତାଙ୍କୁ ସ୍ୱାଗତ ଜଣାଇବା ପାଇଁ ସାଜସଜ୍ଜା ଚାଲିଛି। ରାସ୍ତାଘାଟ ସଫା ଚାଲିଛି। ପ୍ରଥମ ଥର ପାଇଁ ବେଲ୍‌ଜିଅମ୍ ରାଣୀଙ୍କ ନିମନ୍ତ୍ରଣ ରକ୍ଷା କରି ଶ୍ରେଷ୍ଠ ବୈଜ୍ଞାନିକ ଆଇନ୍‌ଷ୍ଟାଇନ୍ ଆସୁଛନ୍ତି। ସମସ୍ତେ ଭାବନ୍ତି, ବୈଜ୍ଞାନିକମାନେ କଣ ଆମ ପରି ମଣିଷ ନା, ଭଗବାନ ! କେତେ ଭାବନ୍ତି, ଆମ ଚାଲି-ଚଳଣିଠାରୁ ତାଙ୍କ ଚାଲିଚଳଣି ନିଶ୍ଚୟ ଅଲଗା ହୋଇଥିବ। ସେ କେବେ ମଟର ଗାଡ଼ି ଛଡା ପାଦରେ ଚାଲୁ ନଥିବେ।

ଏପରି କାହାରି କେଉଁ ଭାବିଲେଣି। ଦେଖୁ ଦେଖୁ ସମୟ ଅତି ନିକଟ ହୋଇଗଲା। ସମସ୍ତେ ନିଜ ନିଜର ହାତ ଘଡ଼ିକୁ ଚାହିଁଥାନ୍ତି। ସମୟ ୧୧ ବାଜିବାକୁ ଦୁଇ ମିନିଟ ବାକି।

ଗାଡ଼ିର ହର୍ଣ୍ଣ ଶୁଭିଲା । ବୈଜ୍ଞାନିକଙ୍କୁ ଦେଖିବା ପାଇଁ ସମସ୍ତଙ୍କର ଉତ୍କଣ୍ଠା ଅଧିକ ବଢ଼ିଗଲା । ପ୍ଲାଟଫର୍ମ ବାହାରେ ରାଣୀଙ୍କ କର୍ମଚାରୀମାନେ ସୁସଜ୍ଜିତ ଗାଡ଼ି, ଘୋଡା, ବ୍ୟାଣ୍ଡପାର୍ଟି ଓ ସୈନ୍ୟବାହିନୀ ସହ ଅନେକ ଲୋକ ଅପେକ୍ଷା କରିଛନ୍ତି ବୈଜ୍ଞାନିକଙ୍କୁ ସ୍ୱାଗତ ଜଣାଇବାକୁ ।

ଷ୍ଟେସନ୍‌ରେ ଗାଡ଼ି ଠିକ୍ ସମୟରେ ପହଞ୍ଚିଲା । ରାଣୀଙ୍କ କର୍ମଚାରୀମାନେ ପ୍ରଥମ ଶ୍ରେଣୀ ବଗିକୁ ଯାଇ ତନ୍ନ ତନ୍ନ କରି ତନଖି ନେଲେ । କିନ୍ତୁ କିଏ ପ୍ରକୃତରେ ବୈଜ୍ଞାନିକ କେହି ଚିହ୍ନି ପାରୁନାହାନ୍ତି । ଠିକ୍ ସମୟରେ ପୁଣି ଗାଡି ଷ୍ଟେସନ୍ ଛାଡ଼ିଲା । ଷ୍ଟେସନ୍‌ରୁ ଲୋକେ ନିରାଶ ହୋଇ ଫେରିଗଲେ । ବାଟ ଭିଡ଼ରେ ଢେର କଥା ଶୁଣାଗଲା । କିଏ କହିଲା, ବୈଜ୍ଞାନିକଙ୍କ ପ୍ରୋଗ୍ରାମ୍ କେନ୍‌ସିଲ୍ ହେଲା । କିଏ କହିଲା, ତାଙ୍କର ସମୟ ଜ୍ଞାନ ନାହିଁ । ଆଉ କିଏ କହିଲା, ଏ ବୈଜ୍ଞାନିକ ଥରେ ପ୍ୟାରିହ୍ ସହରରେ ହଜି ଯାଇଥିଲେ । ଆଜି ବି ସେ ଅବସ୍ଥା ତାଙ୍କର ହୋଇଥିବ ।

ରାଣୀଙ୍କୁ ବୈଜ୍ଞାନିକଙ୍କ ନ ଆସିବା ଖବର ଦିଆଗଲା । ରାଣୀ ହତାଶ ହୋଇ ଭାବିଲେ—ବୈଜ୍ଞାନିକମାନେ କଣ ଏମିତି କଥା ରଖନ୍ତି ନାହିଁ ? ତେବେ ସେମାନେ କି ମଣିଷ ? ଏପରି ଭାବୁ ଭାବୁ ହଠାତ୍ ତାଙ୍କ ଦେହରକ୍ଷୀ ଖଣ୍ଡିଏ କାଗଜ ତାଙ୍କ ଆଡକୁ ବଢ଼ାଇଦେଲା । ସେଥିରେ ବୈଜ୍ଞାନିକଙ୍କ ଆସିବା ଖବର ଲେଖାଥିଲା ।

ରାଣୀ ଶଠି ପଢ଼ି ଆନନ୍ଦରେ ଉଆସ ଆଡେ ଚାଲିଲେ ସ୍ୱାଗତ ଜଣାଇବାକୁ । ରାଣୀ ପ୍ରଥମେ ଆଇନ୍‌ଷ୍ଟାଇନ୍‌ଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । କାରଣ ତାଙ୍କ ଦେହରେ ଥିଲା ସାଧା ପୋଷାକ । ପୁଣି ଝାମ୍ପୁରା ମୁଣ୍ଡର ବାଲଗୁଡାକ ପାଚି ଯାଇଛି । ଠିକ୍ ଆଉବାୟା ପରି ଦିଶୁଥିଲେ । ରାଣୀ ଆଦର ସହକାରେ ତାଙ୍କୁ ସ୍ୱାଗତ ଜଣାଇ ଉଆସ ଭିତରକୁ ପାଛୋଟି ନେଲେ । ତା ପରେ ଅତିଥି ସତ୍କାର ପୂର୍ବକ ତାଙ୍କ ସହ ହସଖୁସି କରି କିଛି ସମୟ କଟାଇଲେ ।

ସହରର ଚାରିଆଡେ ଚହଳ ପଡିଗଲା । ଆଇନ୍‌ଷ୍ଟାଇନ୍ ଆଜି ଚାରିଟାବେଳେ ତାଙ୍କ ଆବିଷ୍କାର 'ଆପେକ୍ଷିକ ତତ୍ତ୍ୱ' ଉପରେ ଭାଷଣ ଦେବେ । ହଜାର ହଜାର ଲୋକ ଆସି ସଭା ମଣ୍ଡପରେ ପହଞ୍ଚିଗଲେଣି । ସମସ୍ତେ ଦେଖିବା ପାଇଁ ବ୍ୟସ୍ତ ।

ଠିକ୍ ସମୟରେ ଆଇନ୍‌ଷ୍ଟାଇନ୍ ଭାଷଣ ଆରମ୍ଭ କଲେ । ସେଠି ସେ ଛୋଟ ଛୋଟ ଉଦାହରଣ ଦେଇ ତାଙ୍କ ଆବିଷ୍କାର କଥା ବୁଝାଇଲେ । ସେ କହିବାର ମର୍ମ ଏହିପରି— ମନେକର ତୁମର ବାସସ୍ଥାନ ବ୍ରହ୍ମପୁର । ବ୍ରହ୍ମପୁର କଟକଠାରୁ ଦକ୍ଷିଣ ଦିଗରେ ଅବସ୍ଥିତ । ବିଶାଖାପାଟଣାଠାରୁ ବ୍ରହ୍ମପୁର ଉତ୍ତର ଦିଗରେ ଅବସ୍ଥିତ । ଏଥିରୁ ଜଣାପଡୁଛି ଯେ ପ୍ରତ୍ୟେକ ସ୍ଥାନ ଆପେକ୍ଷିକ । ଏହା ରହିବା ସ୍ଥାନ ଉପରେ ନିର୍ଭର କରେ ।

ଆଉଗୋଟିଏ ସରଳ ଉଦାହରଣ ଦେଇ ସେ କହିଲେ ଯେ— ଆମେ ସମସ୍ତେ ପୃଥିବୀପୃଷ୍ଠରେ ବାସ କରୁଛେ । ପୃଥିବୀ

ଆମକୁ ସ୍ଥିର ପରି ଜଣାପଡୁଛି । କିନ୍ତୁ ଆମେ ଯଦି ପୃଥିବୀ ପୃଷ୍ଠରେ ରହି ଅନ୍ୟ ଗ୍ରହକୁ ଦେଖିବା, ତେବେ ତାହା ଗତିଶୀଳ ପରି ଜଣାପଡ଼ିବ । ଆଉ ଯଦି ସେହି ଗ୍ରହକୁ ଯାଇ ପୃଥିବୀକୁ ଦେଖିବା, ତେବେ ପୃଥିବୀଟା ଗତିଶୀଳ ପରି ଜଣାଯିବ । ଏଥିରୁ ଜଣାଯାଏ ଯେ ବିଭିନ୍ନ ଅବସ୍ଥାରେ ଥାଇ ବିଭିନ୍ନ ଦର୍ଶକ ଏହାକୁ ଭିନ୍ନ ଭିନ୍ନ ରୂପରେ ଦେଖିପାରିବେ । ତା ହେଲା ଆପେକ୍ଷିକ ତତ୍ତ୍ୱ ।

ତୁମେ ଯଦି ଏକ ଘଣ୍ଟା ଧରି ଆଈଙ୍କ ପାଖରେ ମଜା ଗପ ଶୁଣ, ତେବେ ତୁମକୁ ସେହି ଏକ ଘଣ୍ଟା ଅଧ ଘଣ୍ଟା ପରି ମନେ ହେବ । କିନ୍ତୁ ଏକ ଘଣ୍ଟା ଧରି ବାପ୍‌କୁ ଅପେକ୍ଷା କରି ବା ନଆଁ ପାଖରେ କାମ କଲେ ସେହି ଘଣ୍ଟାକ ତୁମକୁ ଆହୁରି ଅନେକ ସମୟ ପରି ଲାଗିବ । ଏହି ଉଦାହରଣରୁ ବୁଝାଯାଏ ଯେ, ମନୁଷ୍ୟର ସମୟବୋଧ ଶକ୍ତି ଭିନ୍ନ ଭିନ୍ନ ଅବସ୍ଥା ଉପରେ ନିର୍ଭର କରେ । ଏହା ସର୍ବଦା ଆପେକ୍ଷିକ ।

ରାମ ଓ ଶ୍ୟାମ ଦୁଇ ଭାଇ । ସେମାନେ ବ୍ରହ୍ମପୁରରେ ରହନ୍ତି । ପ୍ରତ୍ୟେକଙ୍କ ପାଖରେ ପାଞ୍ଚ ଶହ ଲେଖାଏଁ ଟଙ୍କା ଅଛି । ଶ୍ୟାମ ସେ ଟଙ୍କା ନେଇ ଦିଲ୍ଲୀରେ ରହିଲା । ଦିଲ୍ଲୀ ଭାରି ମହଙ୍ଗା ସହର । ସେଠି ଜିନିଷପତ୍ରର ଦରଦାମ ଓ ସେଠିକା ଖର୍ଚ୍ଚ ନିଶ୍ଚୟ ଅଧିକ । ତେଣୁ ଦିଲ୍ଲୀରେ ପାଞ୍ଚଶହ ଟଙ୍କାରେ ଚଳିବା ଯେତିକି କଷ୍ଟ, ସେତିକି କଷ୍ଟ ବ୍ରହ୍ମପୁରରେ ନାହିଁ । ଏଥିରୁ ଜଣାପଡ଼ୁଛି ଯେ ଅର୍ଥର ମୂଲ୍ୟ ମଧ୍ୟ ଆପେକ୍ଷିକ । ଏହାର ମୂଲ୍ୟ ଖର୍ଚ୍ଚ କରିବା ସ୍ଥାନ ଉପରେ ନିର୍ଭର କରେ ।

ଆଇନ୍‌ଷ୍ଟାଇନ୍‌ଙ୍କ ସରଳ, ସୁନ୍ଦର ଭାଷଣ ଶୁଣି ଶ୍ରୋତାମାନେ ତାଙ୍କର ଜୟଗାନ କଲେ । ଭାଷଣ ଶେଷ ହେବା ପରେ ଅନେକ ଲୋକ ଘେରିଯାଇ ତାଙ୍କୁ ଅନେକ ପ୍ରଶ୍ନ ପଚାରିଲେ । କିନ୍ତୁ ଆଇନ୍‌ଷ୍ଟାଇନ୍ କହିଲେ– ମୁଁ ତ ସୁନ୍ଦରୀ ଅଭିନେତ୍ରୀ ନୁହେଁ । ତେବେ ମତେ ଦେଖିବା ପାଇଁ ଏତେ ଭିଡ କାହିଁକି ?

କେତେକ ସାମ୍ବାଦିକ ତାଙ୍କୁ ପ୍ରଶ୍ନ କଲେ—ଆପଣ ଅଧିକାଂଶ ସମୟ ଗାଡ଼ି ବ୍ୟବହାର କରନ୍ତି ନାହିଁ କାହିଁକି ?

ଆଇନ୍‌ଷ୍ଟାଇନ୍ କହିଲେ—ଯେଉଁମାନେ ଲୋକଙ୍କ ଠାରୁ ଦୂରରେ ରହିବାକୁ ଚାହାନ୍ତି, ସେମାନେ ଯାନବାହନ ବ୍ୟବହାର କରନ୍ତି । କିନ୍ତୁ ମୁଁ ତ ଆପଣଙ୍କ ପାଖରେ ରହିବାକୁ ଚାହେଁ । ମୁଁ ବି ଆପଣଙ୍କ ପରି । ତେଣୁ ମୋର ଗାଡ଼ିର ସେମିତି ଦରକାର ନାହିଁ ।

ଆଉ ଜଣେ ପଚାରିଲେ—ବୈଜ୍ଞାନିକଙ୍କ ପ୍ରତି ଆପଣଙ୍କ ମତ କଣ ? ଉତ୍ତରରେ ସେ କହିଲେ—ଆମର ବୁଦ୍ଧି ଆମ ପ୍ରତି ଅଭିଶାପ ନ ହୋଇ ଆଶୀର୍ବାଦ ହେବା ଉଚିତ । ବୈଜ୍ଞାନିକମାନେ ଏହାକୁ ଗବେଷଣା ଭିତରେ ରହି ବି ଭୁଲିଯିବା ଉଚିତ ନୁହେଁ ।

ଏହି ଆପେକ୍ଷିକ ତତ୍ତ୍ୱ ଆବିଷ୍କାର ପାଇଁ ଆଇନ୍‌ଷ୍ଟାଇନ୍‌ଙ୍କୁ ନୋବେଲ୍ ପୁରସ୍କାର ଦିଆଗଲା । ଏହି ପୁରସ୍କାର ଲକ୍ଷେ ଟଙ୍କା । କିନ୍ତୁ ସେ ସବୁ ଟଙ୍କା ଦରିଦ୍ର ଓ ଅସହାୟ ଲୋକଙ୍କୁ ବାଣ୍ଟି

ଦେଲେ । ଏଥିରେ କେତେକ ସାମ୍ବାଦିକ ତାଙ୍କୁ ପ୍ରଶ୍ନକଲେ—ଆପଣ ଅର୍ଥକୁ ନିଜେ ନ ରଖି ବାଣ୍ଟିଦେଲେ କାହିଁକି ? ଉତ୍ତରରେ ଆଇନ୍‌ଷ୍ଟାଇନ୍ କହିଲେ—ଅର୍ଥହିଁ ଅନର୍ଥର କାରଣ । ବହୁତ ଧନ ଠୁଳ ହେଲେ ମୋହ ଜାତ ହୁଏ । ଏହି ମୋହ ଦୁଃଖର କାରଣ । ଏଥିରେ ମନୁଷ୍ୟ ଧନକୁ ଭୋଗ ନ କରି ଧନ ମନୁଷ୍ୟକୁ ଭୋଗ କରେ । ଯେଉଁମାନେ ଭାବନ୍ତି ଅର୍ଥ ବିନା ମଣିଷ ଜୀବନରେ ସୁଖ ନାହିଁ, ସେ ପ୍ରକୃତ ମଣିଷ ନୁହେଁ । ଧନ ଆମର ଦାସ ହେବା ଉଚିତ । ଆମେ ଧନର ଦାସ ହେଲେ ପ୍ରକୃତ ଅମଣିଷଟିଏ ପାଲଟିଯିବା ।

ସାମ୍ବାଦିକ ପୁଣି ପଚାରିଲେ—ଆପଣ କିପରି ଜୀବନ ଯାପନ କରିବାକୁ ଚାହାନ୍ତି ?

ଆଇନ୍‌ଷ୍ଟାଇନ୍—ସର୍ବଦା ନିରଳସ ଓ ଶାନ୍ତିପୂର୍ଣ୍ଣ ଜୀବନଯାପନ କରିବା ମୋର ଇଚ୍ଛା ।

ସାମ୍ବାଦିକ—ଆପଣ ନୋବେଲ୍ ପୁରସ୍କାର ବ୍ୟତୀତ ଆହୁରି ଅନେକ ପୁରସ୍କାର ପାଇଛନ୍ତି ଯାହାକି ଅନ୍ୟ କେହି ପାଇନାହାନ୍ତି । ଏ ବିଷୟରେ ଆପଣଙ୍କ ପ୍ରତିକ୍ରିୟା କଣ ?

ଆଇନ୍‌ଷ୍ଟାଇନ୍—ମୁଁ ସମ୍ମାନ ପାଇଁ ଲାଳାୟିତ ନୁହେଁ । ସମ୍ମାନ ପାଇବା ଉଦ୍ଦେଶ୍ୟରେ ଯେଉଁମାନେ କର୍ମ କରନ୍ତି, ସେମାନେ ପ୍ରଶଂସା ପାଇଁ ବ୍ୟାକୁଳ ହୁଅନ୍ତି । ଆଉ ସେମାନେ ସମ୍ମାନ ପାଇଗଲେ ଆତ୍ମହରା ହୋଇପଡନ୍ତି । ଯିଏ ଅନ୍ୟର ସେବା କରି ଆନନ୍ଦ ପାଏ, ତାକୁ ପ୍ରଶଂସା, ସମ୍ମାନ ଇତ୍ୟାଦିର କିଛି ମାନେ ନଥାଏ । ସେ ପୁରସ୍କାର ପାଇଲେ ବି ଗର୍ବ

କରେନା । ମୁଁ ଆପଣଙ୍କ ସେବା କରିପାରନ୍ତି । ତେଣୁ ମୁଁ ଭଗବାନଙ୍କଠାରେ କୃତଜ୍ଞ ।

ଆଇନ୍‌ଷ୍ଟାଇନ୍ ସବୁବେଳେ ହସ ଖୁସିର ଲୋକ । ଶ୍ରେଷ୍ଠ ବନ୍ଧୁଆଙ୍କୁ ତାଙ୍କର ଘର ଆଦର । ତାଙ୍କର ମାନସିକ ଶକ୍ତି ଏତେ ପ୍ରବଳ ଯେ, ସେ କେବେହେଲେ ଦୁଃଖରେ ଅଧୀର ହେଉନଥିଲେ । ସାରା ପୃଥିବୀକୁ ନିଜ ଘର ବୋଲି ସେ ମଣୁଥିଲେ । ସବୁବେଳେ ସେ କହନ୍ତି ଆମ୍ଭମାନେ ପରସ୍ପରକୁ ଭଲପାଇବା ଗୁଣ ଶିଖିବା ଉଚିତ । ଯେହେତୁ ଭଗବାନ୍ ଆମ ସମସ୍ତଙ୍କୁ ଭଲ ପାଆନ୍ତି । ଆମେ ଏ ପୃଥିବୀକୁ ଆସିଛେ ଭଲ କାମ କରିବା ପାଇଁ, ମଉଜ ମଜଲିସ୍ କରିବାକୁ ନୁହେଁ ।

ଆଇନ୍‌ଷ୍ଟାଇନ୍ ପିଲାବେଳୁ ରୁଗ୍‌ଣ ଓ ଲାଜକୁଳା ଥିଲେ । ସ୍କୁଲ୍‌ରେ ବି ସେ ଭଲ ପାଠ ପଢ଼ୁ ନଥିଲେ । ତେଣୁ ଶିକ୍ଷକ ତାଙ୍କୁ ଗଧ ତାଲିକାରେ ରଖିଥାନ୍ତି । ଦିନେ ଶିକ୍ଷକ ତାଙ୍କ ଉପରେ ଚଢ଼ିଯାଇ ଆଦେଶ ଦେଲେ ଯେ ସ୍କୁଲରୁ ସାର୍ଟିଫିକେଟ୍ ନେଇଯିବା ପାଇଁ ।

ଆଇନ୍‌ଷ୍ଟାଇନ୍ ଆଶ୍ଚର୍ଯ୍ୟ ହୋଇ ପଚାରିଲେ - ସାର୍, ମୁଁ ତ କିଛି ଦୋଷ କରିନି । ତଥାପି ମତେ ସ୍କୁଲରୁ ଯିବାପାଇଁ ଆଦେଶ ଦେଲେ କାହିଁକି ? ଉତ୍ତରରେ ଶିକ୍ଷକ କହିଲେ— ତୋ' ଭଳି ଗଧ ସ୍କୁଲରେ ରହିଲେ ମୋ' ସମ୍ମାନରେ ଆଞ୍ଚ ଆସିବ । ତେଣୁ ତୁ ସ୍କୁଲ ଛାଡ଼ିଦେବା ଭଲ ।

ହେଲେ କିଏ ଜାଣିଥିଲା, ସେହି ପିଲା ଦିନେ ପୃଥିବୀର ଜଣେ ଶ୍ରେଷ୍ଠ ବୈଜ୍ଞାନିକ ହେବ ? ସେହି ସ୍କୁଲ ପିଲା ଯେତେ ସମ୍ମାନ ପାଇଛନ୍ତି, ପୃଥିବୀର ବିଜ୍ଞାନ ଜଗତରେ ଆଉ କେହି-ହେଲେ ସେହିପରି ସମ୍ମାନ ପାଇନାହାଁନ୍ତି ।

ଏହି ପୃଥିବୀ ବିଖ୍ୟାତ ବୈଜ୍ଞାନିକ ଆଇନ୍‌ଷ୍ଟାଇନ୍ ୧୮୭୯ ମାର୍ଚ୍ଚ ୧୪ ତାରିଖ ଦିନ ଜନ୍ମଗ୍ରହଣ କରି ୧୯୫୫ ଏପ୍ରିଲ୍ ୧୮ ତାରିଖରେ ପ୍ରିନ୍‌ସ୍‌ଟନସ୍ଥିତ ବାସଭବନରେ ମୃତ୍ୟୁବରଣ କରିଥିଲେ । କିଏ ଜାଣିଥିଲା, ଦିନେ ଏହି ବୈଜ୍ଞାନିକଙ୍କ ପ୍ରତିଭା ସାରା ପୃଥିବୀକୁ ଚମକାଇ ଦେବ । ତାଙ୍କର ମୃତ୍ୟୁରେ ପୃଥିବୀ ଗୋଟିଏ ବୈଜ୍ଞାନିକକୁ ହରାଇଲା ନୁହେଁ ଯେ ଗୋଟିଏ ବିରାଟ ଶକ୍ତିକୁ ହରାଇଲା ।

ସେଥିପାଇଁ ତ ମୁଁ କହୁଥିଲି, ଆଇନ୍‌ଷ୍ଟାଇନ୍ ହେଉଛନ୍ତି କୋଟିଏରୁ ଗୋଟିଏ ।



# କାଠିକା ଚିନ୍ତା ବାଇମୁଣ୍ଡିକା



[ ନିଉଟନ୍ ]

ଦିନକର ଘଟଣା । ଜଣେ ବାପ ଛେଉଣ୍ଡ ଯୁବକ ସେଓ ଫଳ ବଗିଚାରେ ବସିଥିଲେ । ଗଛ, ଲତା, ଫୁଲ, ଫଳ ଦେଖିଲେ ସେ ଖୁସି ହୋଇଯାଉଥିଲେ । ଅଧିକାଂଶ ସମୟ ନୀରବରେ ବସି ପ୍ରକୃତି ବିଷୟରେ ଜାଣିବାକୁ ସେ ଚେଷ୍ଟା କରୁଥିଲେ ।

ସେଓ ଗଛତଳେ ଯୁବକଟି ବସିଥିବା ସମୟରେ ହଠାତ୍ ସେ ଗଛରୁ ଫଳଟିଏ ଖସି ତଳେ ପଡ଼ିଗଲା । ସେ ଆଶ୍ଚର୍ଯ୍ୟ ହୋଇ ଚିନ୍ତାକଲେ ଯେ ଫଳଟି ଉପରକୁ ନଯାଇ ତଳକୁ ପଡ଼ିଲା କାହିଁକି ? ଏହାର କାରଣ କଣ ? ଏ ବିଷୟରେ ଜାଣିବାକୁ ତାଙ୍କର ଆଗ୍ରହ ବଢ଼ିଲା । ନିଜକୁ ଗବେଷକ ମନେ କରି ସେ ପ୍ରକୃତିକୁ ଗବେଷଣାଗାର ଭାବି ଏ ଦିଗରେ ଗବେଷଣା କରିବାକୁ ସେ ନିଶ୍ଚୟ କଲେ । ପରୀକ୍ଷା କରିବାକୁ ଯାଇ ସେ ଗୋଟିଏ ପଥର ଉପରକୁ ଫିଙ୍ଗି ଦେଖିଲେ ଯେ ତାହା ପୁଣି ପୃଥିବୀ ଆଡକୁ

ଖସି ପଡ଼ୁଛି । ଏଣୁ ସେ ଭାବିଲେ ଯେ ପୃଥିବୀର ନିଶ୍ଚିତ ଭାବେ କିଛି ବଳ ଅଛି । ଏହି ବଳ ହିଁ ପଥର ବା ସେଓକୁ ପୃଥିବୀ ପୃଷ୍ଠ ବା କେନ୍ଦ୍ରକୁ ଟାଣି ଆଣୁଛି ।

ପୁଣି ସେ ଦେଖିଲେ ଯେ ସୌରଜଗତରେ ଏକପ୍ରକାର ବଳ ଦ୍ୱାରା ଗ୍ରହ, ନକ୍ଷତ୍ର ଆଦି ପରସ୍ପର ଆକର୍ଷିତ ହୋଇ ପ୍ରତ୍ୟେକ ନିର୍ଦ୍ଦିଷ୍ଟ ପଥରେ ବା ଅକ୍ଷରେ ଘୂରି ସୂର୍ଯ୍ୟକୁ




ପ୍ରଦକ୍ଷିଣ କରୁଛନ୍ତି । ଏ ପ୍ରକାର ଆକର୍ଷଣ ବଳକୁ "ମହାକର୍ଷଣ ବଳ" ବୋଲି ସେ ନାମିତ କଲେ । ସେହିପରି ପୃଥିବୀ ମଧ୍ୟ ଏହି ନିୟମ ଅନୁସାରେ ପ୍ରତ୍ୟେକ ବସ୍ତୁକୁ ନିଜ କେନ୍ଦ୍ର ଆଡକୁ ଆକର୍ଷଣ କରେ ।

ଏ ଯୁବକଟି କିଏ ଜାଣ ? ଏ ହେଉଛନ୍ତି ବିଖ୍ୟାତ ବୈଜ୍ଞାନିକ ଓ ପ୍ରକୃତ ଦାର୍ଶନିକ ସାର୍ ଆଇଜାକ୍ ନିଉଟନ୍ । ଅତି କମ୍ ବୟସରୁ ତାଙ୍କ ବାପା ମରିଯାଇଥିଲେ । କିଛି ଦିନ

ପରେ ତାଙ୍କ ମାଆ ଅନ୍ୟ ଜଣଙ୍କୁ ବାହା ହେବାରୁ ସେ ବାପା ମାଆଙ୍କ ସ୍ନେହରୁ ବଞ୍ଚିତ ହେଲେ । ଜନ୍ମ ବେଳକୁ ସେ ଏତେ ଦୁର୍ବଳ ଥିଲେ ଯେ ବଞ୍ଚିବାର ଆଶା ନଥିଲା ।

ସେ ବଡ଼ ଖାମଖିଆଲ ଲୋକ । ଦିନେ ଦିନେ ଲୁଗାପଟା ପିନ୍ଧିବା ବେଳେ ତାଙ୍କର ଟାଇକୁ ନବାନ୍ଧି ଚାଲିଥାନ୍ତି । ଦିନକର କଥା । ନିଉଟନ୍‌ଙ୍କର ଅତି ଘନିଷ୍ଠ ବନ୍ଧୁ ତାଙ୍କୁ ଦେଖିବାକୁ ଆସିଥିଲେ । ନିଉଟନ୍‌ଙ୍କ ସ୍ୱଭାବ ତାଙ୍କ ବନ୍ଧୁ ଆଗରୁ ଜାଣିଥିଲେ । ତେଣୁ ସେ ପରୀକ୍ଷାଗାରରେ ନିଉଟନ୍‌ଙ୍କୁ ଅପେକ୍ଷା କଲେ । ସେ ଭାବିଲେ ମଧ୍ୟାହ୍ନ ଭୋଜନ ବେଳକୁ ସେ ନିଶ୍ଚୟ ପରୀକ୍ଷାଗାରକୁ ଆସିବେ । ସେତେବେଳେ ଦେଖାହେବ । ଏହା ଭାବି କୁଆଡେ ନଯାଇ ସେ ପରୀକ୍ଷାଗାରରେ ଅପରାହ୍ନ ଦୁଇଟାଯାଏଁ ଅପେକ୍ଷା କଲେ । ଏଣେ ତାଙ୍କୁ ଭାରି ଭୋକ ହେଉଥାଏ । ଭୋକ ସମ୍ଭାଳି ନପାରି ବନ୍ଧୁ ଜଣକ ଆଗପଛ କିଛି ବିଚାର ନକରି ନିଉଟନ୍‌ଙ୍କ ପାଇଁ ରଖାଯାଇଥିବା ଖାଦ୍ୟ ସେ ପରୀକ୍ଷାଗାର ଭିତରେ ଖାଇ ପ୍ଲେଟ୍ ଘୋଡ଼ାଇ ରଖିଦେଲେ ଓ ନିଉଟନ୍‌ଙ୍କୁ ଅପେକ୍ଷା କଲେ ।

ସାଢ଼େ ଦୁଇଟାରେ ନିଉଟନ୍ ଆସି ପହଞ୍ଚିଲେ । ବନ୍ଧୁ ତାଙ୍କୁ ସ୍ୱାଗତ ଜଣାଇ ବହୁତ ସମୟ ଅପେକ୍ଷା କରିବା କଥା କହିଲେ । ନିଉଟନ୍‌ଙ୍କୁ ସେତେବେଳେ ଭାରି ଭୋକ ହେଉଥାଏ । ନିଉଟନ୍ କହିଲେ—ବନ୍ଧୁ, ମୁଁ ଆଗ ଗଣ୍ଡେ ଖାଇସାରେ । ପରେ କଥା ହେବା । ଏହା କହି ସେ ପରୀକ୍ଷାଗାରକୁ ଯାଇ ଦେଖନ୍ତି ତ ପ୍ଲେଟ୍‌ରେ କିଛି ଖାଦ୍ୟ ନାହିଁ ।

ନିଉଟନ୍ ଆଉ କରନ୍ତୁ କ'ଣ ? ସେ ହସି ହସି ଆସି ବନ୍ଧୁଙ୍କୁ କହିଲେ—ଆପଣ ଜାଣନ୍ତି ବୈଜ୍ଞାନିକମାନେ ଗବେଷଣାରେ ବ୍ୟସ୍ତ ରହି ଖାଇବା ପିଇବା ବି ଭୁଲିଯାଆନ୍ତି । ଏଇନା ପ୍ଲେଟକୁ ଦେଖିଲି ତ ମୋ' ଖାଇବା କଥା ମନେ ପଡ଼ିଲା ।

ବନ୍ଧୁ ଜଣକ ଭାରି ମଉଜିଆ ଲୋକ ଥିଲେ । ସେ ହସି ହସି ସବୁ କଥା ଖୋଲି କହିଲେ । ଫଳରେ ପୁଣି ଖାଦ୍ୟ ମଗାହେଲା । ନିଉଟନ୍ଙ୍କ ଅନୁରୋଧକ୍ରମେ ଉଭୟେ ପୁଣି ଖାଦ୍ୟ ଖାଇ ହସଖୁସି କଲେ ।




[ ପ୍ରିଜମ୍ ]

ବସ୍ତୁ ଉପରେ ବଳ ପ୍ରୟୋଗ କଲେ ତା' ଗତିର କି ପରିବର୍ତ୍ତନ ହୁଏ, ସେ ବିଷୟରେ ନିଉଟନ୍ ଗବେଷଣା କରିଥିଲେ । ପିଲାଦିନେ ପବନର ବେଗ ଓ ବଳ ନିର୍ଣ୍ଣୟ

କରିବା ପାଇଁ ସେ ବିଶେଷ ଆଗ୍ରହୀ ଥିଲେ । ଆଲୋକ ସମ୍ବନ୍ଧରେ ପରୀକ୍ଷା ଚଳାଇ ବି ସେ ବିଶେଷ ଖ୍ୟାତି ଅର୍ଜନ କରିଥିଲେ । ସୂର୍ଯ୍ୟ ରଶ୍ମିକୁ ପ୍ରିଜମ୍ ମଧ୍ୟରେ ପ୍ରବେଶ କରାଇ ପ୍ରମାଣ କରାଇଥିଲେ ଯେ ସୂର୍ଯ୍ୟଙ୍କ ରଶ୍ମି ସାତୋଟି ରଙ୍ଗର ସମଷ୍ଟିରେ ଗଠିତ । ସେଗୁଡ଼ିକ ହେଲା—ବାଇଗଣୀ, ଘନନୀଳ, ସବୁଜ, ହଳଦିଆ, ଲାଲ ଓ ନୀଳ । ଏହାକୁ କ୍ରମାନୁବର୍ତ୍ତୀ ଲାଲ କହନ୍ତି । ଏହି ସାତୋଟି ରଙ୍ଗ ଇନ୍ଦ୍ରଧନୁଠାରେ ଦେଖିବାକୁ ମିଳେ ।



[ ନିଉଟନ୍‌ଙ୍କ ବର୍ଣ୍ଣଚକ୍ର ]

ସାତୋଟି ବର୍ଣ୍ଣକୁ ପରୀକ୍ଷା କରିବା ପାଇଁ ନିଉଟନ୍ ନିଜେ ଗୋଟିଏ ବର୍ଣ୍ଣ ଚକ୍ର ଯନ୍ତ୍ର ଆବିଷ୍କାର କରିଥିଲେ । ତାକୁ ଆମେ ନିଉଟନ୍‌ଙ୍କ ବର୍ଣ୍ଣଚକ୍ର ବୋଲି କହୁ ।

ଚନ୍ଦ୍ରର ଆକର୍ଷଣ ଫଳରେ ସମୁଦ୍ରରେ ଜୁଆର ସୃଷ୍ଟି ହୁଏ । ଏହି ବିଷୟ ପରୀକ୍ଷା କରି ସେ ଦୃଢ଼ ନିଶ୍ଚିତ ହୋଇଥିଲେ । ପ୍ରତିବିମ୍ବରୁ ବର୍ଣ୍ଣଦୋଷ ଦୂର କରିବା ପାଇଁ ସେ ଟେଲିସ୍କୋପ ଉଦ୍ଭାବନ କରିଥିଲେ । ସେ ବିଜ୍ଞାନ ଜଗତକୁ ଜଣାଇଲେ ଯେ ମାଧ୍ୟାକର୍ଷଣ ଶକ୍ତି କେବଳ ପୃଥିବୀ ପ୍ରତି ସୀମାବଦ୍ଧ ନରହି ଗ୍ରହଗ୍ରହାନ୍ତର ଯାଏଁ ମଧ୍ୟ ବ୍ୟାପ୍ତ । ଆଜି ଏହି ତତ୍ତ୍ୱକୁ ଅନୁସରଣ କରି ମହାକାଶ ବୈଜ୍ଞାନିକମାନେ ବିଭିନ୍ନ ଗ୍ରହକୁ ଯିବାପାଇଁ ସମର୍ଥ ହୋଇ ପାରୁଛନ୍ତି ।

ନିଉଟନ୍ ଖୁବ ସରଳ ପ୍ରକୃତିର ଲୋକ । ସେ ଏତେ ବଡ ବୈଜ୍ଞାନିକ ହୋଇ ବି ସାଧାରଣ ମଣିଷ, ପଶୁ , ପକ୍ଷୀଙ୍କୁ




[ ଦୂରବୀକ୍ଷଣ ଯନ୍ତ୍ର ]

ବି ଭଲ ପାଉଥିଲେ । ତାଙ୍କର ଦ'ଟା ପୋଷା ବିଲେଇଙ୍କୁ ପାଖରେ ଧରି ସେ ଖାଉଥିଲେ ଓ ଶୋଉଥିଲେ । ଥରେ ତାଙ୍କ ମୁଣ୍ଡରେ ଗୋଟାଏ ଅଜବ ଖିଆଲ ପଶିଲା । ସେ ବଢ଼େଇକୁ ଡାକି କହିଲେ—ଦେଖ, ମୋ' ଝରକାରେ ଦୁଇଟି ବାଟ କରିଦେବ । ସେଥିରୁ ବଡ ବିରାଡ଼ି ପାଇଁ ବଡ ବାଟ ଓ ସାନ ବିରାଡ଼ି ପାଇଁ ଛୋଟ ବାଟ ।

ବଡ଼େଇ ଆଶ୍ଚର୍ଯ୍ୟ ହୋଇ ପଚାରିଲି –ମହାଶୟ, ଦୁ'ଟା ବାଟର ଆବଶ୍ୟକତା କଣ ? ଗୋଟିଏ ବଡ ବାଟରେ କ'ଣ ଛୋଟ ବିରାଡ଼ି ଯାଇ ପାରିବେନି ?

ନିଉଟନ୍ ହସି ହସି କହିଲେ –ଆରେ, ଠିକ୍ କଥା ତ ! ହଁ, ଗୋଟିଏ ବଡ ବାଟ ହିଁ ତିଆରି କର । ଏଥିରୁ ଜଣାପଡ଼ୁଛି ଯେ ବୈଜ୍ଞାନିକମାନେ କେମିତି ବେଳେବେଳେ ଛୋଟ ଛୋଟ ଭୁଲ୍ କରି ବସନ୍ତି ।

ଦିନ ବଢ଼ିବା ସାଙ୍ଗେ ସାଙ୍ଗେ ନିଉଟନ୍‌ଙ୍କ ଆବିଷ୍କାର ବି ବଢ଼ି ଚାଲିଥାଏ । ତାଙ୍କ ଆବିଷ୍କାରରେ ଈର୍ଷାପରାୟଣ ହୋଇ ବହୁତ ଲୋକ ତାଙ୍କୁ ସମାଲୋଚନା ବି କରି ଚାଲିଥାନ୍ତି । ପ୍ରଗତି ପଥରେ ଅଗ୍ରସର ହେବାବେଳେ ବହୁତ ବାଧାବିଘ୍ନର ସାମ୍ନା କରିବାକୁ ପଡେ । କିନ୍ତୁ ବାଧାବିଘ୍ନରେ ଯିଏ ଧୈର୍ଯ୍ୟ ହରାଏ, ସେ କାର୍ଯ୍ୟରେ ସଫଳତା ହାସଲ କରିପାରେ ନାହିଁ । ଅସମୟ ସମୟରେ ମନୁଷ୍ୟର ଆନ୍ତରିକ ଶକ୍ତି ଏକତ୍ରିତ ହୋଇ କାମ କରିବା ଦ୍ୱାରା ସବୁ କାମ ସମ୍ଭବ ହୋଇପାରେ ।

ନିଉଟନ୍ ସମସ୍ତ ସମାଲୋଚନାକୁ ପଛକରି ନିଜ କାମରେ ହିଁ ଲାଗିଥାନ୍ତି । ପୁଣି ତାଙ୍କ ଆବିଷ୍କାର କୌଣସି ଏକ ନିର୍ଦ୍ଦିଷ୍ଟ ବିଭାଗ ଉପରେ ନ ହୋଇ ସମଗ୍ର ବିଜ୍ଞାନ ଜଗତ ଉପରେ ଆଧାରିତ ହୋଇଥିବାରୁ ତାଙ୍କୁ ଯୁଗାନ୍ତର ବୈଜ୍ଞାନିକ କହିଲେ ବି କିଛି ଅତ୍ୟୁକ୍ତି ହେବ ନାହିଁ ।

ଏହି ଯୁଗାନ୍ତର ବୈଜ୍ଞାନିକ ସାର୍ ଆଇଜାକ୍ ନିଉଟନ୍ ୧୬୪୨ ମସିହାରେ ଇଂଲଣ୍ଡର ଉଲସ୍ଥପ୍ ନାମକ ସ୍ଥାନରେ ଜନ୍ମଗ୍ରହଣ କରି ୧୭୨୭ ମସିହାରେ ମୃତ୍ୟୁବରଣ କରିଥିଲେ ।

ସେ ସାରା ଜୀବନ ବଢେଇଛନ୍ତି ସମାଜ ସେବାରେ । କେବଳ ନିଉଟନ୍ କାହିଁକି, ସବୁ ବୈଜ୍ଞାନିକମାନେ ସେଇଆ । ଯେମିତି କଟକ ଚିନ୍ତା ବାଇମୁଣ୍ଡିକୁ ଲାଗିଥିଲା, ଠିକ୍ ସେମିତି ସମାଜର ଚିନ୍ତା ନିଉଟନ୍ଙ୍କୁ ଲାଗିଥିଲା । ସେ ବ୍ୟକ୍ତି କେତେ ମହାନ୍ ଏଥିରୁ ଆମକୁ ଜଣା ପଡୁଛି ।



# ଅଜବ ପକ୍ଷ



[ ହାର୍ଭେ ]

ସେହି ଦିନଟି ଥିଲା ଏପ୍ରିଲ୍ ପହିଲା ୧୫୭୮ ମସିହା । ସମସ୍ତେ ଜାଣନ୍ତି ସେହି ଦିନଟି ନିର୍ବୋଧର ଦିନ । କିନ୍ତୁ କିଏ ଜାଣିଥିଲା ପୃଥିବୀ ପୃଷ୍ଠରେ ଏହିପରି ଏକ ଦିନରେ ବିଶିଷ୍ଟ ବୈଜ୍ଞାନିକ ହାର୍ଭେ ଜନ୍ମଲାଭ କରିବେ । ନିର୍ବୋଧର ଦିନରେ ଯେ ସବୁ ନିର୍ବୋଧ ଜନ୍ମ ହେବେ, ତାହା ନୁହେଁ ।

ଉଇଲିୟମ୍ ହାର୍ଭେ ଥିଲେ ବାସ୍ତବିକ ଜଣେ ପ୍ରତିଭାବାନ୍ ବ୍ୟକ୍ତି । ସେ ଇଂଲଣ୍ଡର ବିଶିଷ୍ଟ ବ୍ୟବସାୟୀ ଥୋମାସ୍ ହାର୍ଭେଙ୍କ ସପ୍ତମ ପୁତ୍ର । ପିଲାଦିନରୁ ଦେଖିବାକୁ ସେ ବାଙ୍ଗରା । ଏଣୁ ଲୋକେ ତାଙ୍କୁ ଗେଡ଼ୁ ହାର୍ଭେ ବୋଲି ଡାକୁଥିଲେ । ପିଲାଟି ବାଙ୍ଗରା ହେଲେ କଣ ହେଲା, ତାର ବୁଦ୍ଧି ଥିଲା ଭାରି ବିଚକ୍ଷଣ ।

ପିଲା ଦିନରୁ ଶରୀର ବିଜ୍ଞାନ ପଢ଼ିବାକୁ ହାର୍ଭେଙ୍କର ଭାରି ଝୁଙ୍କ ଥାଏ । ୧୫୯୩ ମସିହାରେ ପାଡୁଆ ବିଶ୍ୱ-

ବିଦ୍ୟାଳୟରେ ଡାକ୍ତରୀ ପାଠ ପଢ଼ିବା ପାଇଁ ଭର୍ତ୍ତି ହେଲେ। ପାଠପଢ଼ା ସମୟରେ ପ୍ରଫେସରମାନେ ପିଲାଙ୍କର ଶରୀରତତ୍ତ୍ୱ ଓ ଅସ୍ତ୍ରୋପଚାରର ଉପରେ ଜ୍ଞାନ ଦେଖି ଆଶ୍ଚର୍ଯ୍ୟ ହୋଇ ଯାଉଥିଲେ। ସେ ଖାଲି ବହି ପଢ଼ି ସନ୍ତୁଷ୍ଟ ହେଉ ନଥିଲେ। ସେ ସବୁ ପାଠକୁ ପରୀକ୍ଷା କରି ଜ୍ଞାନ ଅର୍ଜନ କରିବାକୁ ଇଚ୍ଛା କରୁଥିଲେ। ସତ୍ୟ ଜାଣିବା ଥିଲା ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ। ଏଣୁ ଶ୍ରେଣୀ ଗୃହରେ ହୃତ୍‌ପିଣ୍ଡ ଉପରେ ଯେଉଁ ଜ୍ଞାନ ପାଉଥିଲେ, ସେଥିରେ ସେ ସନ୍ତୁଷ୍ଟ ହେଉନଥିଲେ। ତାହା ସତ କି ମିଛ ସେ ଜାଣିବାକୁ ଚାହୁଁଥିଲେ। ସେଥିପାଇଁ ଅଧିକାଂଶ ସମୟରେ ବଜାରକୁ ଯାଇ ମାଛ କିଣି ଆଣୁଥିଲେ। ସେ ମରିବା ପର୍ଯ୍ୟନ୍ତ ତାକୁ କାଟି ତା' ହୃଦ୍‌ଯନ୍ତ୍ରର କ୍ରିୟା କିପରି ଚାଲୁଛି ଓ ବନ୍ଦ ହେଉଛି, ତନ୍ନ ତନ୍ନ କରି ପରୀକ୍ଷା କରୁଥିଲେ। ମାଛ ଦେହରେ ରକ୍ତ ସଞ୍ଚାଳନ କିପରି ହେଉଛି, ତାହା ବି ସେ ଲକ୍ଷ୍ୟ କରୁଥିଲେ।

୧୬୮୧ ମସିହାରେ ଡାକ୍ତରୀ ପାଶ୍ କରି ସେ ଡାକ୍ତର ଚାକିରୀ କଲେ। ହାର୍ଭେ ଠିକ୍ ସମୟରେ ନିଜ କାମକୁ ଆସନ୍ତି ଓ ଠିକ୍ ସମୟରେ ଫେରିଯାଆନ୍ତି। ସେ ଥିଲେ ଅମୃତହସ୍ତା। କୌଣସି ରୋଗୀ ଦେହରେ ସେ ହାତ ଦେଲା ମାତ୍ରେ ସେ ଭଲ ହୋଇଯାଉଥାଏ। ରୋଗ ନିଦାନରେ ଯେମିତି ଭୁଲ୍ ନହେବ, ସେଥି ପ୍ରତି ସେ ବିଶେଷ ନଜର ରଖିଥାନ୍ତି। ରୋଗୀକୁ ଟିକିନିଖି ପ୍ରଶ୍ନ ପଚାରି ରୋଗର ଲକ୍ଷଣ ଆଗ ବୁଝନ୍ତି। ତାଙ୍କ ବ୍ୟବହାର ଏତେ ସରଳ ଥିଲା ଯେ, ସେ

ରୋଗୀର ମାନସିକ ଅବସ୍ଥା ଜାଣିପାରୁଥିଲେ । ରୋଗୀମାନେ କହନ୍ତି, ହାର୍ଭେଙ୍କୁ ଦେଖିଦେଲେ ଆମରୋଗ ଭଲ ହୋଇଯାଏ ଓ ଆରାମ ଲାଗେ । ଚିକିତ୍ସା କ୍ଷେତ୍ରରେ ବିଶେଷ ଜ୍ଞାନ ଥିବା ହେତୁ ରାଜା ଚାର୍ଲସ୍ ପ୍ରଥମ ତାଙ୍କୁ ନିଜର ପରିବାର ଡାକ୍ତର ଭାବେ ନିଯୁକ୍ତ ଦେଲେ ।

ଡାକ୍ତର ହାର୍ଭେଙ୍କୁ ଯେତେବେଳେ ସମୟ ମିଳେ, ସେ ଛୋଟ ଛୋଟ ପଶୁ, ପକ୍ଷୀ, ଜିଆ, ମାଛ, ବେଙ୍ଗ ଧରି ତାକୁ କାଟି ପରୀକ୍ଷା ନିରୀକ୍ଷା କରୁଥାନ୍ତି । ଦେହର କେଉଁ ଅଂଶରେ



କିପରି ରକ୍ତ ସଞ୍ଚାଳନ ହେଉଛି, ତାହା ଦେଖୁଥାନ୍ତି । ଏପରି ୨୫ ବର୍ଷ କାଳ ଅକ୍ଳାନ୍ତ ପରିଶ୍ରମ କରିବା ପରେ ସେ ପ୍ରମାଣ କଲେ ଯେ ମନୁଷ୍ୟ ଦେହରେ ଥିବା ହୃତ୍‌ପିଣ୍ଡ ଦ୍ୱାରା ରକ୍ତ

ସଞ୍ଚାଳନ ହୋଇପାରୁଛି ! ଏହି ନୂଆ ଆବିଷ୍କାରରେ ପୃଥିବୀର ସମସ୍ତ ବୈଜ୍ଞାନିକ ଆଶ୍ଚର୍ଯ୍ୟ ହୋଇଗଲେ । ଏ ବିଷୟରେ ସେ ପ୍ରମାଣ ଦେଇ ଖଣ୍ଡିଏ ବହି ଲେଖିଲେ ।

ଡାକ୍ତର ହାର୍ଭେ ୧୬୨୮ରେ ଶରୀର ଭିତରେ ରକ୍ତ ସଞ୍ଚାଳନ ବିଷୟରେ ପ୍ରଥମେ ଠିକ୍ ତଥ୍ୟ ପ୍ରକାଶ କଲେ । ହୃତ୍‌ପିଣ୍ଡ ହେଲା ଆମ ହାତମୁଠା ପରି ଏକ ମାଂସପିଣ୍ଡୁଳା । ସେ ଦିନ ରାତି ରକ୍ତ ପମ୍ପ୍ କରିବାରୁ ତାହା ଧପ୍ ଧପ୍ ହେଉଛି । ଏହି ପମ୍ପ୍ ମଣିଷର ଜନ୍ମଠାରୁ ମୃତ୍ୟୁଯାଏଁ ଚାଲିଥାଏ । ଏହା କେବେ ବିଶ୍ରାମ ନିଏ ନାହିଁ । ଏଟା ଏକ ଅଜବ ପମ୍ପ୍ ।

ଦେହ ଭିତରେ ରକ୍ତ କିପରି ବୁଲୁଛି ଜଣାଇବାକୁ ଯାଇ ସେ କହିଲେ ଯେ, ହୃତ୍‌ପିଣ୍ଡରୁ ରକ୍ତ ପାଦ ଓ ପାପୁଲିକୁ ଆସି ଫେରି ଯିବାକୁ ମୋଟେ ୧୮ ସେକଣ୍ଡ ଲାଗୁଛି । କିନ୍ତୁ ମୁଣ୍ଡକୁ ଯାଇ ଫେରି ଆସିବାକୁ ୮ ସେକଣ୍ଡ ଲାଗୁଛି । ଫୁସ୍‌ଫୁସ୍‌କୁ ଯାଇ ପୁଣି ହୃତ୍‌ପିଣ୍ଡକୁ ଆସିବାକୁ ୫ ସେକଣ୍ଡ ଲାଗୁଛି । ପ୍ରାୟ ଦେଢ଼ ସେକଣ୍ଡ ମଧ୍ୟରେ ରକ୍ତ ହୃତ୍‌ପିଣ୍ଡ ଭିତରେ ଥରେ ବୁଲି ଆସେ । ସେ କହିଲେ ଯେ, ହୃତ୍‌ପିଣ୍ଡ ହେଉଛି ରକ୍ତ ସଞ୍ଚାଳନର ପ୍ରଧାନ କେନ୍ଦ୍ର । ଏହାକୁ ଏକ ପମ୍ପ୍ ସହିତ ତୁଳନା କରଯାଇପାରେ । ଯଦି ଜଣେ ଲୋକ ୬୦ ବର୍ଷ ବଞ୍ଚିବ, ତାହାର ହୃତ୍‌ପିଣ୍ଡ ଅତି କମ୍‌ରେ ୫୦ ଲକ୍ଷ ଗ୍ୟାଲେନ୍ ରକ୍ତ ପମ୍ପ୍ କରି ସାରିଥିବ । କିନ୍ତୁ ଏହି ପମ୍ପ୍ ବନ୍ଦ ହୋଇଯିବା ଦ୍ୱାରା ଦେହର ରକ୍ତ ସଞ୍ଚାଳନ ବି ବନ୍ଦ ହୋଇଯାଏ । ରକ୍ତ ଯୋଗାଣ ବନ୍ଦହେଲେ ମନୁଷ୍ୟର ମୃତ୍ୟୁ ହୁଏ ।

ଛାତିର ପଞ୍ଜରା ତଳେ ବାମ ପାଖରେ ଦୁଇ ଫୁସ୍‌ଫୁସ୍ ମଧ୍ୟରେ ହୃତ୍‌ପିଣ୍ଡ ରହିଛି । ଏହା ଭିତରେ ୪ଟି କୋଠରୀ ଅଛି । ଚଉଡା ଅଂଶର କୋଠରୀ ଦୁଇଟିକୁ ଦକ୍ଷିଣ ଓ ବାମ ଅଳିନ୍ଦ ଓ ସରୁ ଅଂଶର ଦୁଇଟି କୋଠରୀକୁ ଦକ୍ଷିଣ ଓ ବାମ ନିଳୟ କୁହାଯାଏ । ଦେହର ସମସ୍ତ ଅଂଶର ମଇଳା ରକ୍ତ ଶିରା ଦେଇ ଦକ୍ଷିଣ ଅଳିନ୍ଦ ଓ ଦକ୍ଷିଣ ନିଳୟରେ ପହଞ୍ଚେ । ସେଠାରୁ ଫୁସ୍‌ଫୁସୀୟ ଧମନୀ ଦେଇ ରକ୍ତ ଶୁଦ୍ଧ ହେବାପାଇଁ ଫୁସ୍‌ଫୁସ୍‌କୁ ଯାଏ । ସେଠି ରକ୍ତ ସଫାହୋଇ ପୁଣି ଶିରା ଦେଇ ବାମ ଅଳିନ୍ଦକୁ ଆସେ । ତା' ପରେ ବାମ ନିଳୟକୁ ଯାଏ । ସେଠାରୁ ମହାଧମନୀ ରାସ୍ତା ଦେଇ ବିଭିନ୍ନ ଶାଖାପ୍ରଶାଖା ଦେଇ ଶରୀରର ବିଭିନ୍ନ ଅଂଶକୁ ଯାଏ । ପ୍ରକାଶଥାଉକି ଦକ୍ଷିଣ ଅଳିନ୍ଦରୁ ଦକ୍ଷିଣ ନିଳୟ ଓ ବାମ ଅଳିନ୍ଦରୁ ବାମ ନିଳୟକୁ ବାଟଥାଏ । ତାହା ପତଳା ପରଦା ଦ୍ୱାରା ବନ୍ଦଥାଏ । ଅଳିନ୍ଦର ଚାପ ପାଇଲେ ନିଳୟକୁ ଯାଇପାରେ କିନ୍ତୁ ନିଳୟରୁ ଚାପ ପାଇଲେ ଅଳିନ୍ଦକୁ ଆସିପାରେ ନାହିଁ । କାରଣ ଭାଲବ୍ ବା ପରଦାଟି ବନ୍ଦ ହୋଇଯାଏ । ଏହା ଗୋଟିଏ ବିଚିତ୍ର କୌଶଳ ।

ହୃତ୍‌ପିଣ୍ଡର ସଙ୍କୋଚନ ଓ ପ୍ରସାରଣ କ୍ରିୟାକୁ ଯଥାକ୍ରମେ ସିଷ୍ଟୋଲ୍ ଓ ଡ଼ାୟାଷ୍ଟୋଲ୍ କୁହାଯାଏ । ପ୍ରତି ମିନିଟ୍‌ରେ ଆମର ହୃତ୍‌ପିଣ୍ଡ ୭୨ ଥର ଧପ୍‌ଧପ୍ ହୁଏ । କିନ୍ତୁ ନବଜାତ ଶିଶୁର ହୃତ୍‌ପିଣ୍ଡ ଏହି ସମୟରେ ୧୦୦ ଥର ଧପ୍‌ଧପ୍ ହୋଇଥାଏ ।

ପ୍ରକୃତରେ ହୃତ୍‌ପିଣ୍ଡର ସ୍ପନ୍ଦନ ଯୋଗୁଁ ରକ୍ତ ଗତିଶୀଳ ହୁଏ । ଡାକ୍ତର ହାର୍ଭେ ଯେତେବେଳେ ହୃତ୍‌ପିଣ୍ଡର ତଥ୍ୟ ସର୍ବସାଧାରଣଙ୍କ ଆଗରେ ପ୍ରକାଶ କଲେ, ଅଧିକାଂଶ ସହକର୍ମୀ ତାଙ୍କୁ ସମାଲୋଚନା କଲେ । କେତେ ରୋଗୀ ବି ତାଙ୍କୁ ପାଗଳ ଭାବି ଅନ୍ୟ ଡାକ୍ତରଙ୍କ ପାଖରେ ଚିକିତ୍ସିତ ହେଲେ । କିନ୍ତୁ ହାର୍ଭେ ସେଥିପ୍ରତି ବିଚଳିତ ହୋଇନଥିଲେ । ସେ କହିଲେ— ମୁଁ ଯାହା କହୁଛି, ପରୀକ୍ଷା ଦ୍ୱାରା କହୁଛି । ମୁଁ ଜାଣେ ସତ୍ୟ ହିଁ ବିଜ୍ଞାନ । ଏଣୁ ମୁଁ ସତ୍ୟକୁ ଭଲପାଏ ଓ ତାକୁ ହିଁ ବିଶ୍ୱାସ କରେ ।

୧୬୫୭ ମସିହାରେ ୭୯ ବର୍ଷ ବୟସରେ ସେ ପରଲୋକ ଗମନ କଲେ । ସେ ପୃଥିବୀ ପୃଷ୍ଠରୁ ବିଦାୟ ନେଲେ ସତ, କିନ୍ତୁ ଚିକିତ୍ସା କ୍ଷେତ୍ରରେ ଯେତିକି ଉନ୍ନତି ଘଟୁଛି, ତାଙ୍କର ଖ୍ୟାତି ବି ସେତିକି ବଢ଼ୁଛି ।





# ସୁନାର ହାତ

[ ଜେମସ୍ ୱାଟ୍ ]

ପିଲାଟି କରିବ କ'ଣ ? ପିଲାଟି ଦିନରୁ ତ ଭାରି ଦୁର୍ବଳ ଓ ରୁଗ୍ଣ । ସବୁଦିନେ ମୁଣ୍ଡବ୍ୟଥା । ପାଠ ପଢ଼ିବ କିପରି ? ମା'ଙ୍କ ମନ ଭାରି ଦୁଃଖ । ପିଲାଟି କ'ଣ ମୂର୍ଖ ହେବ ? ବୟସ କାହାକୁ ଅପେକ୍ଷା କରେନା ।

କହୁତ ଡେରିରେ ମାଆ ପୁଅକୁ ନେଇ ସ୍କୁଲରେ ନାଁ ଲେଖାଇଲେ । ପିଲାଟିର ଦୁର୍ଭାଗ୍ୟ ଏମିତି ଯେ ସ୍କୁଲକୁ ଯିବା ଦିନ ହିଁ ତାର ଦେହ ବିଗିଡ଼ି ଗଲା । ଅଧା ପଢ଼ି ପିଲାଟି ସ୍କୁଲ୍‌ରୁ ଫେରି ଆସିଲା । ମା'ଙ୍କ ମନ କ'ଣ ଲାଗୁଥିବ ଭାବି ହେଉନି । ପିଲାଟି ପାଇଁ ଖାଲି ଚିନ୍ତା-ଆଉ ଚିନ୍ତା ।

ବାପା ମାଆ ପିଲାଟିକୁ ଘରେ ପାଠ ପଢ଼ାଉଥାଆନ୍ତି । ସେ ଦୁର୍ବଳ ସିନା, ସ୍ମୃତିଶକ୍ତି ଥିଲା ତାର ପ୍ରବଳ । ପୁଣି କାମ କରିବା ପାଇଁ ଥିଲା ତାର ବିଶେଷ ଆଗ୍ରହ ।

ପୁଅର ଏମିତକା ଅବସ୍ଥା ଦେଖି ମାଆ ବାଧ୍ୟ ହୋଇ ସ୍କୁଲ୍‌ରୁ ନେଇ ଆସି ଭଉଣୀଙ୍କ ପାଖରେ ଛାଡ଼ିଲେ । କିନ୍ତୁ ହେବ କ'ଣ ? ସେ ପିଲା କାହା ସହିତ କଥାବାର୍ତ୍ତା କିଛି କରେ ନାହିଁ । ଯେତେବେଳେ ଦେଖିବ, ବସି ରହିଥିବ ରୋଷେଇ ଘରେ । କଥା କଣ କି, ରୋଷେଇ ହେବା ବେଳେ ପାତ୍ରରେ ଥିବା ପାଣି ଯେତେବେଳେ ଟକରମକର ହୋଇ ଫୁଟେ, ସେତେବେଳେ ଘୋଡଣିଟି ଉପର ତଳ ହୋଇ ନାଚୁଥାଏ । ତାକୁ ହିଁ ଏକ ଲୟରେ ବସି ସେ ଦେଖୁଥାଏ ।

ମାଉସୀ ପିଲାଟିକୁ ବହୁତ ବୁଝାନ୍ତି । କହନ୍ତି, ତୁ ଏମିତ ରୋଷେଇ ଘରେ ବସି ରହିଲେ ପାଠ ପଢ଼ିବୁ କେମିତ ? ପୁଣି ତୁ ସାଙ୍ଗସାଥୀଙ୍କ ସହ କଥାବାର୍ତ୍ତା ବ ହେଉନାହୁଁ । ପିଲାଙ୍କ ସହ ଖେଳବୁଲ କଲେସିନା ଦେହ ତୋର ଭଲ ରହିବ । ଦେହ ଭଲ ରହିଲେ ନିଶ୍ଚୟ ତୋର ମନ ବଳାବ ପାଠ ପଢ଼ିବାକୁ । ହେଲେ ମାଉସୀ ଯେତେ ବୁଝେଇଲେ ବ ପିଲାଟି କୋଉ କଥାକୁ ଦେହକୁ ନିଏନ । ସେ କେବଲ ଦେଖୁଥାଏ ରୋଷେଇ ଘର ଭିତରେ ଥିବା ଫୁଟନ୍ତା ହାଣ୍ଡିକୁ ଆଉ ଉଠାପକା ହେଉଥିବା ଘୋଡଣିକୁ ।

ଦିନେ ସେ ଗୋଟିଏ କନାନେଇ ଘୋଡଣିକୁ ଦବାଇବାକୁ ଚେଷ୍ଟାକଲା । ସେଥିରୁ ସେ ଭାବିଲା ଯେ ପାତ୍ର ମଧ୍ୟରୁ ଏକ ଅଜଣା ଶକ୍ତି ଘୋଡଣିକୁ ତଳୁ ଉପରକୁ ଠେଲୁଛି । ସେହି ଶକ୍ତି ହିଁ ଘୋଡଣିକୁ ଉପରକୁ ଉଠାଉଛି । ସେ ପୁଣି ଦେଖିଲା, ପାତ୍ରରେ ଯେତେବେଳେ ପାଣି ଫୁଟୁଛି,

ସେତେବେଳେ ବାଷ୍ପ ତିଆରି ହେଉଛି । ଯଦି ପାତ୍ରର ଘୋଡ଼ଣିକୁ ଭଲ ଭାବରେ ଘୋଡ଼ାଇ ଦିଆଯାଏ, ତେବେ ବହୁତ ବାଷ୍ପ ତିଆରି ହୁଏ । ଏହି ବାଷ୍ପ ସବୁବେଳେ ବାହାରକୁ ଆସିବା ପାଇଁ ବାଟ ଖୋଜୁଥାଏ । ପୁଣି ବାଷ୍ପ ବାହାରକୁ ଆସିବା ପାଇଁ ତଳୁ ଉପରକୁ ଚାପ ପକାଏ । ଘୋଡ଼ଣି ଟିକେ



ଖୋଲିଗଲେ ବାଷ୍ପ ବାହାରକୁ ଚାଲିଆସେ ଓ ଭିତରର ଚାପ କମିଯିବା ଫଳରେ ଘୋଡ଼ଣି ପୁଣି ପାତ୍ର ଉପରେ ପଡ଼ିଯାଏ । ଭଲଭାବରେ କହିବାକୁ ଗଲେ ଘୋଡ଼ଣିକୁ ଠେଲିବାକୁ ଯେତିକି ବାଷ୍ପ ଦରକାର ପଡ଼ୁଥାଆନ୍ତା, ସେତିକି ବାହାରକୁ ଚାଲି ଆସିବାରୁ ଭିତରେ ବାଷ୍ପର ପରିମାଣ କମିଗଲା । ପୁଣି ଯେତେବେଳେ ଅଧିକ ଉତ୍ତାପ ପାଇ ପାତ୍ର ଭିତରେ ବାଷ୍ପ ତିଆରି ହୁଏ, ସେତେବେଳେ ପୁନର୍ବାର ଘୋଡ଼ଣିକୁ ଉପରକୁ ଉଠାଏ ।

ଏହି ତଥ୍ୟ ଯିଏ ଆବିଷ୍କାର କଲା, ସେ କିଏ ଜାଣ ? ସେ ପିଲାଟିର ନାମ ହେଉଛି କେମ୍‌ସ ଓ୍ୱାଟ୍‌ । ୨୦୦ ବର୍ଷ ପୂର୍ବେ ସେ ଏହା ପ୍ରଥମେ ଲକ୍ଷ୍ୟ କରିଥିଲେ । କେମସ୍‌ ଓ୍ୱାଟ୍‌ ପିଲାବେଳେ୍ ଦୁର୍ବଳ ଓ ରୁଗ୍‌ଣ ଥିଲେ ବି ମନଃା ତାଙ୍କର ଖୁବ ସରଳ । ସେ କେବେ ଗର୍ବ କରୁନଥିଲେ । ସେ ଥିଲେ କର୍ମ-ବୀର । ଭଗବାନ ସମସ୍ତଙ୍କୁ ଦୁଇଟି ହାତ ଦେଇଛନ୍ତି । କିନ୍ତୁ ଏ ବୈଜ୍ଞାନିକର ହାତ ଦୁଇଟା ଭିନ୍ନ । ପ୍ରକୃତରେ କହିବାକୁ ଗଲେ ତାଙ୍କର ହାତ ହେଉଛି ସୁନାର ହାତ ।

ସେ ଥିଲେ ଜଣେ ସୁଦକ୍ଷ ମେକାନିକ୍‌ । ୧୭ ବର୍ଷ ବୟସରେ ବାଷ୍ପଚାଳିତ ଇଞ୍ଜିନ, ଶକ୍ତିଚାଳିତ ଯନ୍ତ୍ର ଓ ପମ୍ପ୍‌ ମରାମତି କାମରେ ସେ ନିଯୁକ୍ତି ପାଆନ୍ତି । ବିଭିନ୍ନ ପ୍ରକାର ଯନ୍ତ୍ରପାତି ଖୋଲିବା ଓ ଯୋଡ଼ିବା କାମରେ ବ୍ୟସ୍ତ ରହି ସେ ବହୁତ ଜ୍ଞାନ ଆହରଣ କରନ୍ତି । ଖେଳନା ଜିନିଷ ଦେଖିବା ମାତ୍ରେ ସେ ତାକୁ ଭାଙ୍ଗି ପୁଣି ଯୋଡ଼ିବା କାମରେ ଲାଗି-ଯାଆନ୍ତି । ଏହା ହେଲା ତାଙ୍କ ସଉକ୍‌ ।

ସେ ଦିନ ରାତି ଏମିତି କାମରେ ବ୍ୟସ୍ତ ରହି ଟିକିଏ ବି ଫୁରୁସତ୍‌ ପାଉନଥିଲେ । ଦିନକୁ ଦିନ ମୁଣ୍ଡବିଥା ଓ ଦାନ୍ତବିଥା ରୋଗ ତାଙ୍କୁ ଅଧିକାଂଶ ସମୟରେ ବିବ୍ରତ କରି ଦେଉଥିଲା । କେମସ୍‌ ଓ୍ୱାଟଙ୍କଠାରେ ଗୋଟିଏ ଭଲ ମଉଜିଆ ଗୁଣ ଥାଏ । ସେ ଖୁବ ମଉଜିଆ ଗଳ୍ପ କହନ୍ତି ଯାହାକି ଡାହା ମିଛ ଓ ଅବାନ୍ତର । ସବୁ ଗପ କହି ଅନ୍ୟମାନଙ୍କୁ ହସାଇ ହସାଇ ବେଦମ୍‌ କରି ଦିଅନ୍ତି ।

ଜେମସ୍ ଓ୍ୱାଟ୍ ବାଷ୍ପକୁ ପ୍ରୟୋଗ କରି ଗୋଟିଏ ବାଷ୍ପ ଚାଳିତ ଯନ୍ତ୍ର ନିଜେ ନିଜେ ତିଆରି କଲେ । ବାଷ୍ପଚାଳିତ ଇଞ୍ଜିନ ସାହାଯ୍ୟରେ ପ୍ରଥମେ ରେଲଗାଡ଼ି ଚାଲିଲା । ଶହେ ଘୋଡା ଯେତେ ପରିମାଣରେ ଶକ୍ତି ଟାଣି ନେଇ ପାରନ୍ତି, ଏହି ଇଞ୍ଜିନ୍ ତାଠାରୁ ଅଧିକ ମାଲ ବୋହିଙ୍କ ଚାଲିଲା । ପ୍ରକୃତରେ ଏହା ବାଷ୍ପଯୁଗର ଆରମ୍ଭ କହିଲେ ଅତ୍ୟୁକ୍ତି ହେବ ନାହିଁ ।



[ ବାଷ୍ପଚାଳିତ ରେଲଇଞ୍ଜିନ ]

ଏହି ଇଞ୍ଜିନ୍ ପ୍ରୟୋଗ କରି ସେ ଆଉ ଗୋଟିଏ ଇଞ୍ଜିନ୍ ତିଆରି କଲେ । ଏହା ସାହାଯ୍ୟରେ ବିନା କଷ୍ଟରେ ତଳ ସ୍ତରରେ ରହିଥିବା ପାଣି ଉପରକୁ ଉଠାଯାଇ ପାରିଲା । ସେ ସମୟରେ ଟାଇପ୍‌ରାଇଟର୍ ମେସିନ୍ ନଥିଲା । ତେଣୁ କୌଣସି ଲେଖାର ନକଲ କରିବା ସମ୍ଭବ ହେଉନଥିଲା । ସେ ବାଇଗ୍ରାଫର୍ ନାମକ ଏକ କପିମେସିନ୍ ଉଦ୍ଭାବନ କଲେ, ଯାହାଦ୍ୱାରା ଅବିକଳ ନକଲ କରିବା ସମ୍ଭବପର ହେଲା ।

ଜେମସ୍ ଓ୍ୱାଟଙ୍କ ପ୍ରାରମ୍ଭିକ ଜୀବନ ବଡ଼ କଷ୍ଟରେ କଟିଥିଲା । କିନ୍ତୁ ଶେଷ ଜୀବନରେ ସେ ଅନେକ ଅର୍ଥ ରୋଜଗାର କରି ସୁଖରେ ରହିଥିଲେ । ସେ ପିଲାଦିନରୁ ଗରିବ ଥିବାରୁ, ଦୁଃଖୀ ଓ ଦରିଦ୍ରଙ୍କୁ ସବୁବେଳେ ସାହାଯ୍ୟ କରୁଥିଲେ ।

୧୭୯୧ ମସିହା ସ୍କଟଲଣ୍ଡର ଗ୍ରୀନକ୍ ସହରରେ ଜାନୁଆରୀ ୧୯ ତାରିଖରେ ସେ ଜନ୍ମ ଗ୍ରହଣ କରି ୧୮୯୧ ଖ୍ରୀଷ୍ଟାବ୍ଦ ଅଗଷ୍ଟ ୧୯ ତାରିଖରେ ଇହଲୀଳା ସମ୍ବରଣ କରିଥିଲେ ସେ ଆଜ ଆଉ ନାହାଁନ୍ତି ସତ, କିନ୍ତୁ ଯେତେଦିନ ଯାଏ ରେଳଗାଡ଼ି ଚାଲିଥିବ, ସେତେଦିନ ଯାଏଁ ସେ ଅମର ହୋଇ ରହିବେ ।

ଜେମସ୍ ଓ୍ୱାଟଙ୍କ ମୃତ୍ୟୁ ଖବର ପାଇବା ପରେ ଶହ ଶହ ବୈଜ୍ଞାନିକ କହିଲେ ଯେ, ଦୁର୍ବଳ ହାତରେ ସେ ଆମକୁ ପ୍ରବଳ ଶକ୍ତି ଦେଇ ଯାଇଛନ୍ତି । ଭଗବାନ୍ ଏଭଳି ମହାନ୍ ବୈଜ୍ଞାନିକଙ୍କର ଆତ୍ମାକୁ ଶାନ୍ତିରେ ରଖନ୍ତୁ ଏହା ହିଁ କାମନା ।

